



**ପ୍ରତିଷ୍ଠାତା - ରାମକୃଷ୍ଣ ନନ୍ଦ**

*ଉପଦେଷ୍ଟାମଣ୍ଡଳୀ*

**ଶ୍ରୀ ସହଦେବ ସାହୁ**
**ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ**
**ଇଂ ପ୍ରଭାତ କୁମାର ନନ୍ଦ**

**ସମ୍ପାଦିକା**

**ଅନସୂୟା ନନ୍ଦ**

✤✤✤

**୬୩ ବର୍ଷ, ଦଶମ ସଂଖ୍ୟା**
**ମଇ, ୨୦୧୪**
**ବାର୍ଷିକ ମୂଲ୍ୟ--୧୨୦ ଟଙ୍କା**
**ପ୍ରତିଖଣ୍ଡ-- ୧୫ ଟଙ୍କା**



*ଯୋଗାଯୋଗ*

**ତଳତେଲେଙ୍ଗା ବଜାର,**
**କଟକ-୭୫୩୦୦୯**
*ଦୂରଭାଷ* **: ୯୮୬୧୦୬୪୮୯୧,**
**୨୪୨୨୫୯୭, ୨୪୨୦୦୭୫**
email :
nandaanasuya@hotmail.com
www:odishapublication.com


ଅନ୍ୟାନ୍ୟ ବିଭାଗର ଲେଖକ--
**ଶୁଭେନ୍ଦ୍ର ମୋହନ ଶ୍ରୀଚନ୍ଦନ ସିଂହ, ସୁରେଶ କୁମାର ପଣ୍ଡା, ଜ୍ୟୋତି ରଂଜନ ବିଶ୍ୱାଳ, ଅଜିତାନନ୍ଦ ଗୋସ୍ୱାମୀ**


**✤✤✤✤✤ ଗଳ୍ପ ଓ ଜୀବନୀ**

| | | |
|---|---|---|
| ସୁଲେମାନ | ଡା. ମହାପାତ୍ର ଆନନ୍ଦଶଙ୍କର ମିଶ୍ର | ୫ |
| ଖେଳ ହେଲା କାଳ | ଶଶିକାନ୍ତ ବେହେରା | ୯ |
| ଦୟାଳୁ ତୀର୍ଥଯାତ୍ରୀ | ନିର୍ମଳା କୁମାରୀ ମହାପାତ୍ର | ୧୧ |
| ଭାସିଲିସାର କଣ୍ଢେଇ-୪ | ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ | ୧୬ |
| ଧୂପକାଠି | ସୁରେଶ କୁମାର ପଣ୍ଡା | ୨୪ |
| ଶ୍ରେଷ୍ଠ ଭକ୍ତ | ପ୍ରଶାନ୍ତ କୁମାର ଦାଶ | ୨୮ |
| ବଡ଼ଠାକୁରଙ୍କ ସର୍ପଦଳନ | ନନ୍ଦକିଶୋର ସିଂହ | ୩୪ |
| ସେବାରେ ନ ଥାଏ ଶତ୍ରୁ ଓ ମିତ୍ର | ଡକ୍ଟର ରବିନାରାୟଣ ସାହୁ | ୩୯ |
| ନିଆଁ ଆଉଟାରେ ଖାଣ୍ଟି-ସୁନା ଝଟକେ | ଜେନାମଣି ଲକ୍ଷ୍ମୀକାନ୍ତ | ୪୩ |
| ଛେନାଗୁଡ଼ | ଶ୍ରୀନିବାସ ଖଣ୍ଡାୟୀ | ୫୦ |

**✤✤✤✤✤ କବିତା**

| | | |
|---|---|---|
| ଗ୍ରୀଷ୍ମ | ମାଧବାନନ୍ଦ ପଣ୍ଡା | ୮ |
| ଖୋଜିଲେ ପାଇବ ତାକୁ | ଚିତ୍ତରଂଜନ ପଟ୍ଟନାୟକ | ୧୫ |
| ଭାରି ମନେପଡ଼େ | ପୀତାମ୍ବର ମିଶ୍ର | ୨୩ |
| ପାଣି | ଲକ୍ଷ୍ମୀଚରଣ ସାମନ୍ତରାୟ | ୩୦ |
| ଶରତ ଶୋଭା | କାହ୍ନୁଚରଣ ପାଣିଗ୍ରାହୀ | ୩୬ |
| ଅଧିକାର | ରମାକାନ୍ତ ବେହେରା | ୪୨ |
| ଏହି ଶପଥ ନେଲେ | ପ୍ରଭାକର ମହାପାତ୍ର | ୪୪ |
| କଳିର ଅଳି | ବ୍ରଜବିହାରୀ ଦାଶ | ୫୧ |

**✤✤✤✤✤ ଭ୍ରମଣ କାହାଣୀ**

| | | |
|---|---|---|
| ରଙ୍ଗର ଭଣ୍ଡାର ପର୍ବତ ଶୃଙ୍ଗ | ଡକ୍ଟର ସୁବାସିନୀ ଲେଙ୍କା | ୧୩ |

**✤✤✤✤✤ ଜ୍ଞାନ-ବିଜ୍ଞାନ**

| | | |
|---|---|---|
| ପ୍ରଜାପତି | ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ | ୨୦ |
| ଶକ୍ତିପ୍ରଦାୟକ ପଇଡ଼ | ସୁଦର୍ଶନ ମହାରଣା | ୨୬ |
| ଦୂର ଆକାଶର ଦୀପ | ନିକୁଞ୍ଜ ବିହାରୀ ସାହୁ | ୩୧ |
| ଲେଖନୀର ପାଠଶାଳା | ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି | ୩୩ |
| ସର୍ଦ୍ଦି ଓ ଥଣ୍ଡା | ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ | ୪୦ |

**✤✤✤✤✤ ମନୋରଞ୍ଜନ**

| | | |
|---|---|---|
| ବିଜ୍ଞାନ କୁଇଜ | ଲକ୍ଷ୍ମଣ ମଲ୍ଲିକ | ୨୫ |
| ସାଧାରଣ ଜ୍ଞାନ ପରୀକ୍ଷା | ଜ୍ୟୋତି ରଂଜନ ବିଶ୍ୱାଳ | ୩୫ |
| ତିନିପୁଅ ଓ ସତର ଓଟ | ଇଂ ରଘୁନାଥ ପ୍ରସାଦ ଦାସ | ୩୮ |
| ଚିତ୍ର ଓ ମଞ୍ଜ | କାଞ୍ଚିନାରାୟଣ ମହାନ୍ତି | ୪୫ |
| ଭାବି ଦେଖନ୍ତୁ | ଅନସୂୟା ନନ୍ଦ | ୪୯ |
| ଶବ୍ଦ ଧନ୍ଦା | ଡକ୍ଟର ନିରଞ୍ଜନ ସାହୁ | ୫୩ |

## ❀❀ ଅଭିନନ୍ଦନ ❀❀

ଆମର ପରିଚିତ ଲେଖକ ତଥା ବିଶିଷ୍ଟ ଶିଶୁ ସାହିତ୍ୟିକ ଶ୍ରୀ ଯୁଗଳ କିଶୋର ଷଡଙ୍ଗୀଙ୍କୁ ଶିଶୁ କଲ୍ୟାଣ ଓ ଶିଶୁ ସାହିତ୍ୟ ଗବେଷଣା କେନ୍ଦ୍ର, ଭୋପାଳ ତରଫରୁ ତାଙ୍କର ଶିଶୁ ବିକାଶ କ୍ଷେତ୍ରରେ ନିରନ୍ତର ସାମଗ୍ରିକ ସାଧନା ପାଇଁ 'ଜେ ପ୍ରସାଦ' ସ୍ମୃତି ଶିଶୁ ସାହିତ୍ୟ ପୁରସ୍କାର ପ୍ରଦାନ କରା ଯାଇଛି। ତାଙ୍କର ଏହି କୃତିତ୍ୱରେ ଆମେ ଗର୍ବିତ ହେବା ସହ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜ୍ଞାପନ କରୁଛୁ।

ମଇ ପହିଲା ଶ୍ରମିକ ଦିବସ ଅବସରରେ ଆମର ରାଜ୍ୟ ତଥା ଦେଶର ଅଗଣିତ ଶ୍ରମିକ ବନ୍ଧୁମାନଙ୍କୁ ହାର୍ଦ୍ଦିକ ଅଭିନନ୍ଦନ।

--ସଂସାର ପରିବାର



# ଆମ ଚିଠି ମୁଣିରୁ

**ରେମୁଣା, ବାଲେଶ୍ୱରରୁ, ସାରଦା ନନ୍ଦନ ପାଲିତ**-- ସଂସାର ପତ୍ରିକା ପଢ଼ିଲି। ଏହା ପିଲାଙ୍କ ପାଇଁ ଅତୀବ ଶିକ୍ଷଣୀୟ, ରୁଚିକର ଓ ପ୍ରେରଣାଦାୟୀ। ଗତ ନଭେମ୍ବର ଓ ଡିସେମ୍ବର ମାସରେ ଅଧିକାଂଶ ଲେଖା ବେଶ୍ ଉପାଦେୟ। ସେଇଠି ମିଳଇ ଶାନ୍ତି, କୁକୁର, ଦିଅ ହେ ଫିଟାଇ ଚକ୍ଷୁ, ଜୀବନ ଡଙ୍ଗା ଇତ୍ୟାଦି ବେଶ୍ ଶିକ୍ଷଣୀୟ ଓ ପ୍ରେରଣାଦାୟୀ। ଲେଖକମାନଙ୍କୁ ଧନ୍ୟବାଦ।

**ହରିଶଙ୍କର ରୋଡ୍, ବଲାଙ୍ଗିରରୁ ପ୍ରଦୀପ କୁମାର ଦାଶ**-- ମାର୍ଚ୍ଚ ସଂଖ୍ୟାରେ ପ୍ରକାଶିତ 'ଈଶ୍ୱର ଏକ ଓ ଅଭିନ୍ନ' ଶୀର୍ଷକ ଲେଖାଟି ମୋ ଦ୍ୱାରା ଲିଖିତ। ଏହା ତେଲିଙ୍ଗିବାଜା ପତ୍ରିକାରେ ପ୍ରକାଶିତ ହୋଇଥିଲା। 'ସଂସାର' ପରି ସ୍ୱନାମଧନ୍ୟ ପତ୍ରିକାରେ ଏପରି ତ୍ରୁଟି ହେବା ଅବାଞ୍ଛନୀୟ। ଆଶା ବିଚାର କରିବେ।

**କନ୍ଧବେରେଣୀ, ଚମ୍ପେଶ୍ୱର, କଟକରୁ ଶ୍ରୀନିବାସ ଖଟୁଆ**- ମୁଁ ଆପଣଙ୍କର ପତ୍ରିକାର ନିୟମିତ ପାଠକ। ଏଥିରେ ପ୍ରକାଶିତ ସମସ୍ତ ଲେଖା ବେଶ୍ ଉପାଦେୟ। ତେବେ ଜଣେ ପାଠକ ଭାବରେ ନୁହେଁ, ଯଦି ଲେଖକ ଭାବରେ କେହି ଜଣେ ଏଥିରେ ସ୍ଥାନ ପାଏ, ତେବେ ତାର ଉତ୍ସାହ ଦ୍ୱିଗୁଣ ହୋଇଥାଏ।

**ଉଲୁଣ୍ଡାରୁ ଅମର କୁମାର ସିଂହ**-- ଏ ମାସର ସଂସାରରେ ପ୍ରତ୍ୟେକ ଲେଖା ଭଲ ହୋଇଛି। କବିତା ଓ ଜ୍ଞାନ ବିଜ୍ଞାନ ପୃଷ୍ଠା ମୋତେ ଭାରି ଭଲ ଲାଗିଲା। ଏ ମାସର ପ୍ରଚ୍ଛଦରେ ଅଷ୍ଟ୍ରେଲିଆବାସୀ ନିଜର ଜାତୀୟ ପଶୁଙ୍କୁ ଏଭଳି ବ୍ୟବହାର କରୁଥିବା ଦେଖି ଆଶ୍ଚର୍ଯ୍ୟ ଲାଗିଲା। ୧୦ଜଣ ସ୍ୱାଧୀନତା ସଂଗ୍ରାମୀଙ୍କୁ ନେଇ ଅଙ୍କିତ ଅସାଧାରଣ ଗଛର ଚିତ୍ରକରଙ୍କୁ ଧନ୍ୟବାଦ। ତେବେ ମଇ ସଂଖ୍ୟାରେ ଏହି ସ୍ୱାଧୀନତା ସଂଗ୍ରାମୀ ଚିତ୍ରକରଙ୍କର ନାମ ପ୍ରକାଶ କରିବାକୁ ଅନୁରୋଧ।

**ଚମ୍ପୂଆ କେନ୍ଦୁଝରରୁ ରାସେଶ୍ୱର ମହାନ୍ତ**-- ଏ ମାସର ଶବ୍ଦ ଧନ୍ଦାରେ ଟୀକା ପରିବର୍ତ୍ତେ ଟିକା ହେବ ଏବଂ ଓଡ଼ିଶାର ଏକ ସହର ନ ହୋଇ ଭାରତର ହେବ । ତେବେ ଶବ୍ଦଧନ୍ଦା କର୍ତ୍ତାଙ୍କୁ ଅଶେଷ ଧନ୍ୟବାଦ ଯେ କେତେଗୁଡ଼ିଏ ନୂଆ ଶବ୍ଦ ଦେଇ ପିଲାଙ୍କୁ ଖୋରାକ ଯୋଗାଇ ପାରିଛନ୍ତି ।

**ଏ ମାସର ପ୍ରଚ୍ଛଦ-** ରଙ୍ଗର ଭଣ୍ଡାର ପର୍ବତ ଶୃଙ୍ଗ ବିଷୟରୁ ଚିତ୍ର ପ୍ରଦତ୍ତ ।

***ପୁରୁଣା ସଂସାର ସଂଗ୍ରହ କରନ୍ତୁ***

୨୦୧୨, ୨୦୧୩ ମସିହାର ସଂସାର ଡାକଦ୍ୱାରା ନେଲେ ପ୍ରତିଖଣ୍ଡର ମୂଲ୍ୟ ୫ଟଙ୍କାରେ ଯୋଗାଇ ଦିଆଯିବ ।



# ସୁଲେମାନ

ଡା. ମହାପାତ୍ର ଆନନ୍ଦଶଙ୍କର ମିଶ୍ର

୧୯୧୩ ମସିହା ଅକ୍ଟୋବର ୧୦ ତାରିଖ। ଦୁର୍ଗାପୂଜା ପାଇଁ ସବୁଠି ସଜାସଜି ଜୋର୍‌ସୋର୍‌ରେ ଚାଲିଥାଏ। ଏ ବର୍ଷ ପ୍ରଥମ କରି 'କସବା' ଗାଁରେ ଦୁର୍ଗାମେଢ଼ ହୋଇଛି। ଏଣୁ ଗାଁ ପିଲାଙ୍କ ଫୂର୍ତ୍ତି ଦେଖିବା ଭଳି। ବାଲେଶ୍ୱର ସହରଠୁ ତିନି କିଲୋମିଟର ଦୂର୍‌ରେ ବୁଢ଼ାବଳଙ୍ଗ ନଈ ଆଉ ଏଇ ନଈ ଆରପଟେ ଠିକ୍ ଏକ କିଲୋମିଟର ଉତ୍ତରକୁ କସବା ଗ୍ରାମ। ଏକା ନଈ ସହସ୍ର କୋଶ। ଆଗରୁ ଡଙ୍ଗାରେ ପାରି ହୋଇ ଗାଁ ଲୋକେ ସହର୍‌କୁ ଆସୁଥିଲେ-- ସକାଳ ପାଞ୍ଚଟାରୁ ରାତି ଦଶଟା ପର୍ଯ୍ୟନ୍ତ ନାଉରୀ ଡଙ୍ଗାରେ ଲୋକଙ୍କୁ ପାରି କରାଏ। ଏବେ ପ୍ରାୟ୍ ବର୍ଷେ ହେବ ନଈ ଉପରେ ବଡ଼ ପୋଲ ହେବା ଫଳରେ ଲୋକଙ୍କ ଦୁଃଖ ଦୂର୍ ହୋଇଛି।

ଏ ଗାଁ'ରେ ପ୍ରାୟ୍ ଷାଠିଏ ଭାଗ ଲୋକ ହିନ୍ଦୁ ଓ ଚାଳିଶ ଭାଗ ମୁସଲମାନ। ଗୋଟିଏ ମସଜିଦ୍, ଗୋଟିଏ ଶିବ ମନ୍ଦିର, ଗୋଟିଏ ଜଗନ୍ନାଥ ମନ୍ଦିର ଗାଁ'ରେ ଅଛି। ସ୍ୱାଧୀନତାର ସତଷଠି ବର୍ଷ ଭିତରେ ଏ ଗାଁ'ରେ କେବେ ହିନ୍ଦୁ-ମୁସଲମାନଙ୍କ ଭିତରେ ଗଣ୍ଡଗୋଳ ଲାଗିନାହିଁ। ଗାଁ'ରେ ପ୍ରଥମ କରି ଏ ବର୍ଷ ଦୁର୍ଗାମେଢ଼ ଆରମ୍ଭ କରି ପୂଜା କରିବା ପାଇଁ ସୁଲେମାନ ତା' ସାଙ୍ଗମାନଙ୍କ ସହ ପ୍ରଥମେ ଗ୍ରାମସଭାରେ ପ୍ରସ୍ତାବ ଦେଲା। ସୁଲେମାନ ଏ ବର୍ଷ ସହରରେ ଥିବା କଲେଜରେ ନାଆଁ ଲେଖାଇଛି। ସଂସ୍କୃତ ତାର ପ୍ରିୟ୍ ବିଷୟ୍। ମ୍ୟାଟ୍ରିକ୍ୟୁଲେସନ ପରୀକ୍ଷାରେ ଶତକଡ଼ା ପଞ୍ଚାନବେ ନମ୍ବର ସେ ସଂସ୍କୃତରେ ରଖିଥିଲା। ଗାଁ'ରେ ଗଣେଶ ପୂଜା, ରଥଯାତ୍ରା, ଶିବରାତ୍ରୀ, ମହରମ ସବୁ ପର୍ବ ବେଳେ ସୁଲେମାନ ଆଗରେ ରହିଥାଏ।

ଗାଁ ଲୋକେ ସୁଲେମାନର ପ୍ରସ୍ତାବକୁ ସମର୍ଥନ କଲେ। ଖୁବ୍ ଜାକଜମକରେ ଗାଁ ସ୍କୁଲ ପାଖ ପଡ଼ିଆରେ ଦୁର୍ଗାମଣ୍ଡପ ସଜାଗଲା। କିନ୍ତୁ ପୂଜାର ଠିକ୍ ତିନିଦିନ ଆଗରୁ ବାତ୍ୟା ଆସୁଛି ବୋଲି ସରକାର ଲୋକଙ୍କୁ ସତର୍କ କରାଇଦେଲେ। ନିଶ୍ଚିତ ବାତ୍ୟାର ସଙ୍କେତ ପାଇ ଅକ୍ଟୋବର ୧୨ ତାରିଖ ମହାଷ୍ଟମୀ ଦିନ ଗାଁ'ରେ ଥିବା କେତୋଟି ପକ୍କାଘର ଓ ସ୍କୁଲ ଘରକୁ ଲୋକମାନଙ୍କୁ ଯିବା ପାଇଁ ସରକାର ବାଧ୍ୟ କଲେ।

ଦୁର୍ଗାମଣ୍ଡପରେ କିନ୍ତୁ ପୂଜା ଯଥାରୀତି ଚାଲିଥାଏ। ସୁଲେମାନ, ହବିବ୍, ସତାର, ଅନଓ୍ୱାର, ଗୁଣନିଧି, ପ୍ରକାଶ, ପ୍ରଶାନ୍ତ, ରୁଦ୍ର, ରବୀନ୍ଦ୍ର ପ୍ରମୁଖ ଦୁର୍ଗାପୂଜା ଦାୟିତ୍ୱରେ ଥାଆନ୍ତି। ବାତ୍ୟାରୁ ରକ୍ଷା ପାଇବା ପାଇଁ ଆଶ୍ରୟ୍ ନେଇଥିବା ଲୋକଙ୍କ ପାଇଁ ସେମାନେ ରନ୍ଧା-ରନ୍ଧିର ବ୍ୟବସ୍ଥା ମଧ୍ୟ କରୁଥା'ନ୍ତି। ସୁଲେମାନକୁ ଦୁର୍ଗାମଣ୍ଡପ ଦାୟିତ୍ୱ ଦିଆଗଲା।

ଅକ୍ଟୋବର ୧୨ ତାରିଖ ମହାଷ୍ଟମୀ ଦିନ ରାତିରେ ହଠାତ୍ ଚାରିଆଡ଼ ଅନ୍ଧାର ହୋଇଗଲା। ବିଜୁଳି ଆଲୋକ ଚାଲିଗଲା। ଜେନେରେଟର ଲାଇଟ୍‌ରେ ପୂଜା ଚାଲିଥାଏ।

କିନ୍ତୁ ପବନର ବେଗ ବଢ଼ିବାରୁ ସମସ୍ତେ ଦୁର୍ଗାମଣ୍ଡପରୁ ସ୍କୁଲ ଘରକୁ ଆସି ଆଶ୍ରୟ ନେଲେ। ବାତ୍ୟାର ଭୟଙ୍କର ବେଗରେ ରାତି ୧୧ଟା ବେଳେ ପୂଜାମଣ୍ଡପର ଅସ୍ଥାୟୀ ଛାଉଣି ଗୋଟିଏ ପଟକୁ ଢଳିଗଲା। ପିଲାମାନଙ୍କ ଛାତି ଥରିଉଠିଲା।

ସୁଲେମାନ କହିଲା-- "କ'ଣ କରିବା ? ମାଆଙ୍କ ଉପରେ ଯଦି ଛାଉଣିଟା ପଡ଼ିବ !"

ପ୍ରକାଶ କହିଲା-- ବାହାରକୁ ବାହାରିବା ବର୍ତ୍ତମାନ ନିରାପଦ ନୁହେଁ। ବାତ୍ୟାର ସୁଉ.....ସୁଉ.... ଶବ୍ଦ ଶୁଣୁଛୁ ତ--!"

ସୁଲେମାନ କହିଲା-- "କିନ୍ତୁ ମାଆଙ୍କ ମୂର୍ତ୍ତି କେମିତି ରକ୍ଷା ପାଇବ ?"

ଗୁଣନିଧି ସମସ୍ତଙ୍କ ଅପେକ୍ଷା ବୟସରେ ବଡ଼। ସେ କହିଲା, "ଯାହା ବି ହେଉ, କେହି ବାହାରକୁ ବାହାର ନାହିଁ। ମାଆଙ୍କ ମୂର୍ତ୍ତିର କିଛି କ୍ଷତି ହେବନାହିଁ।

ହବିବ୍ କହିଲା, "ଶୁଣ ଭାଇ, ଦୁର୍ଗାମଣ୍ଡପ କଡ଼ରେ ଯେଉଁ ନିମ୍ବଗଛଟା ଅଛି, ସେଟା ଯଦି ଉପୁଡ଼ି ପଡ଼ିବ, ମଣ୍ଡପର ଅବସ୍ଥା ସରିଯିବ।" ଏହି ସମୟରେ ବାତ୍ୟାର ବେଗ ବଢ଼ିଗଲା ଏବଂ ସତକୁସତ ଦୁର୍ଗାମଣ୍ଡପ କଡ଼ରେ ଥିବା ନିମ୍ବଗଛଟା ଉପୁଡ଼ି ପଡ଼ିବା ଶବ୍ଦ ଶୁଭିଲା; କିନ୍ତୁ ଝରକା ଖୋଲି ଦେଖିବା ପାଇଁ କାହାରି ସାହସ ପାଇଲା ନାହିଁ। ଗଛଟା ଉପୁଡ଼ି ପଡ଼ିବା ସଙ୍ଗେ ସଙ୍ଗେ ଦୁର୍ଗା ମଣ୍ଡପରୁ ଯେଉଁ ଆଲୋକରେଖା କବାଟ ଫାଙ୍କ ବାଟେ ସ୍କୁଲ ଘରକୁ ଆସୁଥିଲା, ସେ ବି ବନ୍ଦ ହୋଇଗଲା। ସ୍କୁଲ ଘର ଭିତରେ ଯାହା ଦୁଇଟି ଲଣ୍ଠଣ ଦିକିଦିକି ହୋଇ ଜଳୁଥାଏ।

ସୁଲେମାନ କାନ୍ଦ କାନ୍ଦ ହୋଇ କହିଲା, "ଶୁଣ ଭାଇ, ଗଛଟା ଦୁର୍ଗାମଣ୍ଡପ ଉପରେ ପଡ଼ିଲା ନା କ'ଣ !"

ଗୁଣନିଧି କହିଲା, "ତୁ ଧୈର୍ଯ୍ୟ ଧର ସୁଲେମାନ। ମୋର ପୂରା ବିଶ୍ୱାସ ଗଛଟା ମଣ୍ଡପ ଉପରେ ପଡ଼ିନାହିଁ। ଅନ୍ତତଃ ବାତ୍ୟାର ବେଗ କମିବା ପର୍ଯ୍ୟନ୍ତ ଆମକୁ ଅପେକ୍ଷା କରିବାକୁ ପଡ଼ିବ। ଘଣ୍ଟାକ ଭିତରେ ବାତ୍ୟାର ବେଗ କମିଲା; କିନ୍ତୁ ମୁଷଳ ଧାରାରେ ବର୍ଷା ଆରମ୍ଭ ହୋଇଗଲା। ପବନ ପୂରାପୂରି ବନ୍ଦ ହୋଇ ନ ଥାଏ। ତାହାରି ଭିତରେ କାହାରି କଥା ନ ମାନି ସୁଲେମାନ କବାଟ ଖୋଲି ଝଡ଼ ବେଗରେ ବାହାରକୁ ବାହାରିଗଲା। ହାତରେ ତାର ଟର୍ଚ୍ଚ।

ଚାରିଆଡ଼େ ନିରନ୍ଧ୍ର ଅନ୍ଧକାର। ସୁଲେମାନ ଦୁର୍ଗାମଣ୍ଡପ ଆଡ଼କୁ ଦୌଡ଼ିଲା। ନିମ୍ବଗଛଟା ଠିକ୍ ଦୁର୍ଗାମଣ୍ଡପ ସାମନାରେ ପଡ଼ିଥାଏ। ଆଉ ଟିକିଏ ପଛକୁ ପଡ଼ିଥିଲେ, ମଣ୍ଡପଟା ଚୁର୍‌ମାର୍ ହୋଇଯାଇଥା'ନ୍ତା। ବହୁ କଷ୍ଟରେ ସୁଲେମାନ୍ ଗଛର ଡାଳ ଭିତର ଦେଇ ମଣ୍ଡପ ଭିତରେ ପଶିଲା। ମଣ୍ଡପର ଅବସ୍ଥା ଶୋଚନୀୟ ଥିଲା। ଚାରିପଟେ ଯୋଡ଼ା ହୋଇଥିବା ମୋଟା ପ୍ଲାଷ୍ଟିକ୍ ଘୋଡ଼ଣି ସବୁ ଖଣ୍ଡ ଖଣ୍ଡ ହୋଇଯାଇଥିଲା। ବାଉଁଶ ଖୁଣ୍ଟଗୁଡ଼ାକ ଶକ୍ତ ଭାବରେ ଯୋଡ଼ା ହୋଇଥିବାରୁ ମଣ୍ଡପର ଛାଉଣି ଟିକିଏ ଯାହା ଅଣେଇ ଯାଇଥିଲା।

ସୁଲେମାନ୍ ଟର୍ଚ୍ଚ ଆଲୋକରେ ଜେନେରେଟର ଠିକ୍ କଲା। ମଣ୍ଡପ ଭିତରଟା ପୁଣି ଆଲୋକରେ ଝଲ୍‌ମଲ୍ କରି ଉଠିଲା। ସେ ମୂର୍ତ୍ତିଙ୍କ ଆଡ଼କୁ ଚାହିଁଲା। ଆଶ୍ଚର୍ଯ୍ୟ, ଦେବୀଙ୍କ ଉପରେ ଦିଆଯାଇଥିବା ଶକ୍ତ ପ୍ଲାଷ୍ଟିକ ଚାନ୍ଦୁଆଟା ଅକ୍ଷତ ଅବସ୍ଥାରେ ଅଛି ! ବାତ୍ୟା କିମ୍ବା ବର୍ଷା ଦେବୀଙ୍କ ସାଜସଜ୍ଜାର ସାମାନ୍ୟତମ କ୍ଷତି କରି ପାରିନାହିଁ। ସୁଲେମାନର ଭାରି ଇଚ୍ଛା ହେଲା ସେ ଦେବୀଙ୍କର ପାଦ ଛୁଇଁ ତାଙ୍କୁ ପ୍ରଣତି ଜଣାଇବ; କିନ୍ତୁ ପରମୁହୂର୍ତ୍ତରେ ସେ ତାର ଭୁଲ୍ ବୁଝିପାରିଲା-- ସେ ଯେ

ମୁସଲମାନ ! ଦେବୀଙ୍କୁ ସ୍ପର୍ଶ କରିବା ତା' ପକ୍ଷରେ ଉଚିତ ହେବନାହିଁ ! ତା' ଆଖିରେ ଲୁହ ଭିଜିଗଲା । ସେ ସେଇ କାଦୁଅ ଉପରେ ଆଣ୍ଠୁ ମାଡ଼ି ବସି ଦେବୀଙ୍କୁ ପ୍ରଣାମ କଲା । ଏଇ ସମୟରେ ଏକ ଅସ୍ୱାଭାବିକ କଟକଟ ଶବ୍ଦ ତା' କାନରେ ପଡ଼ିଲା ।

ବର୍ଷାପାଣି ପଡ଼ି ଡିଲା ହୋଇଯାଇଥିବା ଗୋଟିଏ ବାଉଁଶ ଖୁଣ୍ଟ ତଳକୁ ନଇଁ ଆସୁଥିଲା । ସର୍ବନାଶ, ଛାଉଣିଟା ଯେ ଖସିପଡ଼ିବ! ସୁଲେମାନ ଆଖି ପିଛୁଳାକେ ଦଉଡ଼ି ଯାଇ ନିଜର ସମସ୍ତ ଶକ୍ତି ଖର୍ଚ୍ଚ କରି କାନ୍ଧ ଲଗାଇ ଖୁଣ୍ଟଟାକୁ ଠେଲି ଧରିଲା ଏବଂ ଜୋର୍‌ରେ ଡାକଛାଡ଼ିଲା- "ଶୁଣ ଭାଇ ହବିବ, ପ୍ରକାଶ--"ପବନର ଭେଗ ଭେଦ କରି ତାର ସେ ଡାକ ସ୍କୁଲ ଘରେ ପହଞ୍ଚିପାରିଲା ନାହିଁ । କିନ୍ତୁ ଏକ ଚମତ୍କାର ଘଟିଲା-- ଜଣେ ପୂଜକ ଦାମନନା ଟର୍ଚ୍ଚ ହାତରେ ମଣ୍ଡପ ଭିତରକୁ ପଶିଲେ । ପ୍ରଧାନ ପୂଜକ ରାମଚନ୍ଦ୍ର ପାଢ଼ୀ ତାଙ୍କୁ ପଠାଇଥିଲେ । ଦାମନନା ସୁଲେମାନକୁ ଡକାଇ ସବୁକଥା ବୁଝି ସ୍କୁଲ ଘରକୁ ଦଉଡ଼ିଲେ ସମସ୍ତଙ୍କୁ ଡାକିବା ପାଇଁ । ଗାଁ ଲୋକେ ଆଉ ପିଲାମାନେ ଆସି ଖୁଣ୍ଟ ସବୁ ଶକ୍ତ ଭାବରେ ପୋତିଲେ । ମଣ୍ଡପ ଭିତରକୁ ପାଣି ନ ପଶିବା ପାଇଁ ଚାରିପଟେ ମାଟି ବନ୍ଧ ଦିଆଗଲା । ସବୁ କାମ ସାରି ସେମାନେ ଭୋର ଭୋର ନିଜ ଘରକୁ ଫେରିଗଲେ । କିନ୍ତୁ ସୁଲେମାନ ମଣ୍ଡପ ଭିତରେ ମୁଣ୍ଡ ପୋତି ବସି ରହିଥାଏ । ହଠାତ୍ ସେ ତା ମଥା ଉପରେ କାହାର ହାତଛୁଆଁ ଅନୁଭବ କଲା । ଉପରକୁ ମୁଣ୍ଡ ଟେକି ଚାହିଁ ଦେଖିଲା ଦେବୋପମ ପ୍ରଧାନ ପୂଜକ ଶ୍ରୀ ରାମନାରାୟଣ ପାଢ଼ୀ ।



ସୁଲେମାନର ମୁଣ୍ଡ ଉପରେ ହାତ ରଖି ପାଢ଼ୀ କହୁଥିଲେ, "ତୁମେ ଧନ୍ୟ ସୁଲେମାନ ! କିଏ କହେ ମା'ଦୁର୍ଗା କେବଳ ହିନ୍ଦୁଙ୍କର । ତୁମର ଅତୁଳନୀୟ ଭକ୍ତି ଫଳରେ ଦେଖ ମା'ଙ୍କ ମୁଖମଣ୍ଡଳରୁ କିପରି ଆଶିଷ ଝରିପଡୁଛି !" ସୁଲେମାନ ନଇଁ ପଡ଼ି ପୂଜକଙ୍କ ପାଦ ଛୁଇଁଲା । ଗୁଣନିଧି ଆସି ସୁଲେମାନଙ୍କୁ କୁଣ୍ଢେଇ ପକାଇଲା । ପାଖ ମନ୍ଦିରରୁ ଘଣ୍ଟ ଶବ୍ଦ ଅସ୍ପଷ୍ଟ ଶୁଭୁଥିଲା ।

*ବୈରାମ ନଗର ଛକ, ବାଲେଶ୍ୱର- ୩* **

## ଡଷ୍ଟ୍‌ବିନ୍ କହେ-- ଧନ୍ୟବାଦ




ସହରର ନାଁ ହେଲସିଙ୍କି । ସେଠାରେ ନଗରପାଳିକା ଚାରିଗୋଟି ଡଷ୍ଟବିନ୍ ସହରର ବିଭିନ୍ନ ସ୍ଥାନରେ ଥାପିଛନ୍ତି । ସେଥିରେ କେହି କିଛି କାଗଜପତ୍ର ଆବର୍ଜନା ପକାଇଲେ ଡଷ୍ଟବିନ୍ କହେ- "ଧନ୍ୟବାଦ" (Thank You) ଆଉ ସେ ସ୍ୱର ଥାଏ ଦେଶର ବିଭିନ୍ନ ଚିତ୍ରତାରକା, କଳାକାର, କ୍ରୀଡ଼ାବିତ୍ ଓ ଲେଖକଙ୍କର ।

--ଡ. ଶୁଭେନ୍ଦ୍ର ମୋହନ ଶ୍ରୀଚଂଦନ ସିଂହ

# ଗ୍ରୀଷ୍ମ

ଶ୍ରୀ ମାଧବାନନ୍ଦ ପଣ୍ଡା

ବସନ୍ତ ବିଦାୟ ନିଅନ୍ତେ ଧରାରୁ
ଗ୍ରୀଷମ ହୁଅନ୍ତି ରଜା
ରବି ରଶ୍ମି ତେଜ ହୁଅଇ ପ୍ରଚଣ୍ଡ
ଉହଳବିକଳ ପ୍ରଜା ।
ପଇଡ଼, ସର୍ବତ, ଲସି, ତରଭୁଜ
ସଂଜବେଳେ ବେଲପଣା
ହୁଅନ୍ତି ହରଷ, ଉଷୁମ ପାନୀୟ
କରିଥା'ନ୍ତି ମନ ଉଣା ।
ସଡ଼କ କଡ଼ରେ ପଳାଶ, ଶିମିଳି
ପାଳଧୁଆ, କୃଷ୍ଣଚୂଡ଼ା
କିରି କିରି ହସି ନାଲି ରିବନରେ
ସଜାଉଥାଆନ୍ତି ଜୁଡ଼ା ।
ବିଷମ ଗ୍ରୀଷମ କାହାର ଜୀବନେ
କରୁଥିଲେ ସନ୍ତାପିତ
ଦୂରେ ଠେଲିଦେବା ନାହିଁ କେବେ ତା'ରେ
କରାଇବା ହରଷିତ ।
ପଡ଼ିଥିଲେ ଗଡ଼ି ଧୂଳି ଦେଇ ଝାଡ଼ି
ଛାତିରେ ଧରିବା ଭିଡ଼ି
ଭାଙ୍ଗିପଡ଼ିଥିଲେ ସହାନୁଭୂତିର
ଅଠା ଦେଇଦେବା ଯୋଡ଼ି ।
ଗ୍ରୀଷମର ଅନ୍ତେ ଆସିବ ବରଷା
କାହିଁକି ହେବା ହତାଶ ?
ସମ୍ମୁଖୀନ ହେବା ଆସୁ ବା ଜୀବନେ
ସୁନାମି ଅବା ବତାସ ।
ଗ୍ରୀଷମ ଅଟଇ କଷଟି ପଥର
କେତେ ସୁନା, କେତେ ଖାଦ
ଦିଅଇ ପରଖି, ଟାଣ ଦିଏ କରି
ଯଦି ଟଳମଳ ପାଦ ।
ସବୁ କଳା କଳା ବଉଦ ପଛରେ
ଔଜ୍ଜ୍ୱଲ୍ୟର ଧାର ପରା
ରହିଥାଏ ଲୁଚି, ପଙ୍କରୁ ଫୁଟଇ
ପଙ୍କଜ ଅମୃତଝରା ।
ସରଳ, ବନ୍ଧୁର ପଥ ଦେଇ ଗଡ଼ି
ଚାଲେ ଜୀବନର ରଥ
ବୀରଦର୍ପେ ତା'ର ହେବା ସମ୍ମୁଖୀନ
ପୂର୍ଣ୍ଣ ହେବ ମନୋରଥ ।
ହତାଶା, ହିରଣ୍ୟକଶିପୁର ଅନ୍ତଃ
ହୋଇବ ଏହା ନିଶ୍ଚୟ
ଆଶା ପ୍ରହଲ୍ଲାଦ ଲଭିବ ଅବଶ୍ୟ
ହରିଙ୍କର ବରାଭୟ ।

*ଇଂରାଜୀ ବିଭାଗ, କେନ୍ଦ୍ରାପଡ଼ା ମହାବିଦ୍ୟାଳୟ, କେନ୍ଦ୍ରାପଡ଼ା*

# ଖେଳ ହେଲା କାଳ

ଶ୍ରୀ ଶଶିକାନ୍ତ ବେହେରା

''ଡମ୍....ଡମ୍.....ଡମ୍.....ଡମ୍ବରୁର ତାଳେ ତାଳେ ପାଦରେ ଘୁଙ୍ଗୁର ବାନ୍ଧି ନାଚୁଥାଏ ସେ । ପିଲାଠାରୁ ବୁଢ଼ାବୁଢ଼ୀ ପର୍ଯ୍ୟନ୍ତ ଦେଖଣାହାରିଏ ରୁଣ୍ଡ ହୋଇଥାନ୍ତି ଗାଁ' ଦାଣ୍ଡରେ। ଲୁଙ୍ଗି ପିନ୍ଧି, ମୁଣ୍ଡରେ ଟୋପି ଥୋଇ ମୁସଲମାନ୍ ହୋଇ ଆଲ୍ଲା ଆକବର କହିଲା ଭଙ୍ଗୀରେ ନମାଜ୍ ପଢ଼େ। କେବେ କେବେ ବଙ୍କୁଲି ବାଡ଼ି ଧରି ନଇଁ ନଇଁ ଚାଲି ଜେଜେବାପା ସାଜେ। ମାଙ୍କଡ଼ିଆ ନିର୍ଦ୍ଦେଶରେ ତାକୁ ଏସବୁ ଖେଳ ଦେଖାଇବାକୁ ହୋଇଥାଏ। ଏପଟସେପଟ ଡେଇଁ ଡେଇଁ ଥକି ପଡ଼ିଲାଣି। ମାଙ୍କଡ଼ିଆ ବେତରେ ପିଟି ଖେଳ ଦେଖାଇବାକୁ ବାଧ୍ୟ କରୁଛି। ଭୋକରେ ପେଟଟା ତା'ର ଗଁ ଗଁ ଡାକୁଛି। ପାଦଯୋଡ଼ାକ ଉଠୁନାହିଁ; ତଥାପି ସେ ନାଚୁଛି ମାଙ୍କଡ଼ିଆର ବେତ ମାଡ଼ ଭୟରେ।



ବଣରେ ବୁଲୁଥିଲା, ଏ ଗଛରୁ ସେ ଗଛକୁ ଡେଇଁ ଡେଇଁ ଫଳମୂଳ ଖାଉଥିଲା। ସ୍ୱାଧୀନରେ ଖେଳାବୁଲା କରୁଥିଲା। ଟିକିଏ ଭୁଲ୍ ପାଇଁ ସେ ଆଜି ଏ ଦଣ୍ଡ ଭୋଗୁଛି। ଖେଳ ଶେଷରେ ମାଙ୍କଡ଼ିଆ ଗାମୁଛା ବିଛେଇଦିଏ। ଦେଖଣାହାରିଏ ଚାଉଳ, ପଇସା ଅଜାଡ଼ି ଦିଅନ୍ତି। ବାଇଗଣ, ଆଳୁ, କୋବି, ମୂଳା ମୋତେ ଖାଇବାକୁ ଦିଅନ୍ତି; ହେଲେ ମାଙ୍କଡ଼ିଆ ସେସବୁ ମୋ'ଠାରୁ ଛଡ଼େଇ ନେଇଯାଏ। ଟକିଟିକି ପିଲାମାନେ କାଠିଖଣ୍ଡକରେ ମୋତେ କେଞ୍ଚନ୍ତି। ଦୁଷ୍ଟାମି କରନ୍ତି; ହେଲେ ଏଇ ଦୁଷ୍ଟାମି କରି ମୁଁ ଏଇ ଦଣ୍ଡ ଭୋଗୁଛି ବୋଲି ସେମାନେ କ'ଣ ଜାଣନ୍ତି?

ଛୋଟିଆ ଜଙ୍ଗଲଟିରେ ରହୁଥିଲା ସେ। କେତେ ରକମର ଗଛଲତାରେ ଜଙ୍ଗଲଟା ହସୁଥିଲା। ଭୋକ ହେଲେ ପିଜୁଳି, କାଙ୍କଡ଼, କୁନ୍ଦୁରୀ --ଏମିତିକା ନାନା ଜାତିର ଫଳ ଖାଉଥିଲା। ଏ ଗଛରୁ ସେ ଗଛକୁ ଡେଇଁ ମନ ଆନନ୍ଦରେ ଖେଳକୁଦ କରୁଥିଲା। ନିଦ ଆସିଲେ ଗଛମୂଳରେ ଗଭୀର ନିଦରେ ଶୋଇଯାଉଥିଲା। କାହାରିକୁ ଡର, ଭୟ ନ ଥିଲା; ମାତ୍ର ବେପରୁଆ ହୋଇ ଟିକିଏ ଭୁଲ୍ ତା' ପାଇଁ କାଳ ସାଜିଲା।

ଶୀତଋତୁ ଥାଏ। ଶିରି ଶିରି ଶିତୁଆ ପବନ ଉତ୍ତର ଦିଗରୁ ବହୁଥାଏ। ଜଙ୍ଗଲ ଭିତରେ ସୂର୍ଯ୍ୟ ନ ପଡ଼ିବାରୁ ଭାରି ଥଣ୍ଡା ଲାଗୁଥାଏ। ଦିନ କଥା ଛାଡ଼, ରାତି ହେଲେ ଗୋଡ଼, ହାତ କାଲୁ ମାରିଯାଏ। ଖେଳକୁଦ କରିବାକୁ ଭାରି କଷ୍ଟ ଲାଗେ। ସବୁବେଳେ ଉଷୁମ ଟାଣିବାକୁ ଇଚ୍ଛା ହେଉଥାଏ।

ଏମିତିକା ଏକ ଶୀତୁଆ ସଞ୍ଜରେ ସେ ବୁଲୁ

ବୁଲୁ ଜଙ୍ଗଲର ଶେଷଭାଗରେ ପହଞ୍ଚି ଦେଖିଲା କିଛି ଦୂରରେ ଛୋଟ ଛୋଟ କୁଡ଼ିଆ ଘର । ଲୋକମାନେ ସେଇ ଜଙ୍ଗଲରୁ ଶୁଖିଲା କାଠ ଗୋଟେଇ ଗୋଛା କରି ତାଙ୍କ କୁଡ଼ିଆକୁ ନେଉଛନ୍ତି । କୁଡ଼ିଆ ଆଗରେ କାଠରେ ନିଆଁ ଲଗେଇ ଚାରି ପାଖରେ ବସି ଉଷୁମ୍ ଟାଣୁଛନ୍ତି । ରୋଷେଇ ବି କରୁଛନ୍ତି । ତା'ମୁଣ୍ଡକୁ ବୁଦ୍ଧିଟାଏ ଜୁଟିଲା । ତା'ପରଦିନ ସକାଳେ ବୁଲି ବୁଲି ଶୁଖିଲା ଡାଳ ଭାଙ୍ଗି ଗୋଟିଏ ସ୍ଥାନରେ ଗଦା କଲା । ତଳେ ପଡ଼ିଥିବା ଶୁଖିଲା ପତରକୁ ଗୋଟେଇ ଆଣି ତା'ପାଖରେ ରଖିଲା । ରାତି ହେବାଯାଏଁ ଜଙ୍ଗଲର ଶେଷରେ ଥିବା ଗୋଟିଏ ଝଙ୍କାଳିଆ ଗଛ ଡାଳରେ ବସି ରହିଲା ।

କୁଡ଼ିଆମାନଙ୍କର ରହୁଥିବା ଲୋକମାନେ ସଞ୍ଜ ହେବାରୁ କୁଡ଼ିଆ ବାହାରେ ରୋଷେଇ କଲେ । କାଠ ଗଦାରେ ନିଆଁ ଲଗାଇ ଚାରିପାଖରେ ବସି ଉଷୁମ୍ ଟାଣିଲେ । ରାତି ହେବାରୁ ଖାଇପିଇ କୁଡ଼ିଆ ଭିତରେ ଶୋଇଗଲେ । ଗଛରୁ ଓହ୍ଲେଇ ସେ କୁଡ଼ିଆ ନିକଟକୁ ଗଲା । ଖଣ୍ଡେ ନିଆଁ ଲାଗିଥିବା କାଠ ଧରି ଜଙ୍ଗଲକୁ ଫେରିଆସିଲା । ଗଦା କରି ରଖିଥିବା ଶୁଖିଲା ପତର ତଳେ ଗେଞ୍ଜିଦେଇ ଥରେ ଦୁଇଥର ଫୁଙ୍କିଦେଲା । କିଛି ସମୟ ଧୂଆଁ ହେବା ପରେ ନିଆଁ ଜଳିଉଠିଲା । ସେ ଏକା ଏକା ନିଆଁ ଲଗେଇ ପାରିଥିବାରୁ ଖୁସିରେ ବହେ ନାଚିଗଲା । ନାଲି ରଙ୍ଗର ନିଆଁ ଜଳିବାର ଦେଖି ଖୁସିରେ ଫାଟି ପଡ଼ିଲା । । ଏଣିକି ସବୁଦିନେ ଏମିତି ନିଆଁ ଲଗେଇ ଉଷୁମ ଟାଣିବ ।



ଶୁଖିଲା ପତର ଜଳି ଜଳି ଗଦେଇଥିବା ଶୁଖିଲା କାଠରେ ନିଆଁ ଲାଗିଲା । ଖୁବ୍ ଜୋରରେ ନିଆଁ ଜଳି ଉଠିଲା । ରଡ ମଡ଼ ଠୋ- ଠୋ- ଶବ୍ଦ ଶୁଣି ସେ ଆନନ୍ଦରେ ନାଚୁଥାଏ; ହେଲେ ହେଲା କ'ଣ ? ନିଆଁଟା ଏତେ ଜୋରରେ ଜଳିଲା ଯେ ଶୁଖିଲା କଞ୍ଚା ସବୁ ଗଛକୁ ଜାଳିଦେଲା । ଶୀତ ରାତି ଯୋଗୁ ଜଙ୍ଗଲର ପାଖାପାଖି ରହୁଥିବା ଲୋକମାନେ ନିଜ ନିଜ କୁଡ଼ିଆ ଭିତରେ ଆରାମରେ ଶୋଇ ଘୁଂଗୁଡ଼ି ମାରୁଥାନ୍ତି । ନିଆଁକୁ ଲିଭେଇବ କିଏ ? ଜଙ୍ଗଲରେ ତା'ରି ପରି ରହୁଥିବା ବିଲୁଆ, ହରିଣ, ଠେକୁଆ, କୁଟୁରା ଓ ବଣଭୁଆଁମାନେ ଜୀବନ ବିକଳରେ ରାତାରାତି ଜଙ୍ଗଲ ଛାଡ଼ି ଯୁଆଡ଼େ ପାରିଲେ ପଳେଇଲେ । ସେ ଆନନ୍ଦରେ ଏତେ ବିଭୋର ହୋଇଯାଇଥିଲା ଯେ କ'ଣ ହେଉଛି ସେ କିଛି ଜାଣି ପାରୁ ନ ଥାଏ ।

ସକାଳ ହେଲା । ସାରା ଜଙ୍ଗଲଟା ପୋଡ଼ି ପାଉଁଶ ହୋଇଗଲା । ରାତିସାରା ଡିଆଁ ଡେଇଁ କରି ତାକୁ ଭାରି ଭୋକ ଲାଗୁଥାଏ । ହେଲେ ସେ ଏଇନେ ଖାଇବ କ'ଣ? ଜଙ୍ଗଲ ଭିତରେ ଥିବା କାଙ୍କଡ଼, କାକୁଡ଼ି, କୁନ୍ଦୁରୀ ଲତାଗୁଡ଼ାକ ତ ପୋଡ଼ିଯାଇଛି । ମିଠା ମିଠା ପିଜୁଳି,

ଜାମୁକୋଳି, ଆମ୍ବଗଛ ସବୁ ତ ପୋଡ଼ି ପାଉଁଶ ପାଲଟିଛି। ପାଉଁଶଗଦା ଖେଳେଇ ଖେଳେଇ କିଛି ନ ପାଇ ମନଦୁଃଖରେ କ'ଣ କରିବ, କ'ଣ ଖାଇବ କିଛି ଚିନ୍ତା କରି ନ ପାରି ପାଉଁଶଗୁଡ଼ାକ ମୁହଁ ହାତରେ ବୋଳି କାନ୍ଦିବାରେ ଲାଗିଲା। ସକାଳ ହେବାରୁ ପାଖ କୁଡ଼ିଆରେ ରହୁଥିବା ଲୋକମାନେ ଜଙ୍ଗଲ ଆଡ଼କୁ ମାଡ଼ି ଆସିଲେ। ଜଙ୍ଗଲ ପୋଡ଼ିଯାଇଥିବାର ଦେଖି ସେମାନେ ମନ ଦୁଃଖ କଲେ। ସେମାନେ ଶାଳପତ୍ର, ଶୁଖିଲା କାଠ, ଶାଳମଞ୍ଜି ନାନା ଜାତିର ଫୁଲଫଳ ସଂଗ୍ରହ କରି ବଜାରରେ ବିକି ଜୀବିକା ନିର୍ବାହ କରୁଥିଲେ। ଏବେ ସେମାନେ କିପରି ବଞ୍ଚିବେ ? ତାକୁ ଦେଖି ସେ ଏପରି କରିଛି ବୋଲି ସଭିଏଁ ମିଳିମିଶି ଗୋଡ଼ାଗୋଡ଼ି କରି ତାକୁ ଧରି ବହେ ଛେଚିଲେ ଓ ଏଇ ମାଙ୍କଡ଼ିଆ ହାତରେ ଧରାଇଦେଲେ।

ସେହିଦିନଠାରୁ ସେ ମାଙ୍କଡ଼ିଆ ପାଖରେ ରହିଲା। ବେତମାଡ଼ ଖାଇ ତା' ବୋଲ ମାନିବାକୁ ବାଧ୍ୟ ହେଲା। ସ୍ୱାଧୀନ ଭାବରେ ଖେଳାବୁଲା ଛାଡ଼ି ତାର ପୋଷା ମାନିଗଲା। ତା' ହାତଟେକା ଖାଇ, ଲୁହା ଜଞ୍ଜିରରେ ବନ୍ଧା ହୋଇ ଖେଳ ଦେଖାଉଛି। ଟିକିଏ ଭୁଲ୍ ପାଇଁ ଜୀବନସାରା ଦଣ୍ଡ ପାଉଛି। ଏବେ ସେ ଭାବୁଛି, କୌଣସି କାର୍ଯ୍ୟ ଭଲମନ୍ଦ ବିଚାର କରିବା ପୂର୍ବରୁ ଅନେକଥର ଭାବିବା ଉଚିତ।

ମାଙ୍କଡ଼ିଆର ବେତ ମାଡ଼ରେ ତାର ଭାବନାର ଖିଅ ଛିଡ଼ିଗଲା। ମାଙ୍କଡ଼ିଆ କହୁଥିଲା-- ଚାଲ୍ ଚାଲ୍ ଆର ଗାଁ'କୁ ଯିବା। ଖେଳ ଦେଖେଇବା। ଲୁହ ଛଳଛଳ ଆଖିରେ ଉଠି ଚାଲିଲା ସେ ମାଙ୍କଡ଼ିଆ ପଛେ ପଛେ।

*ପରମାନନ୍ଦପୁର, ବଳରାମପୁର, ତିହିଡ଼ି, ଭଦ୍ରକ*

***

# ଦୟାଳୁ ତୀର୍ଥଯାତ୍ରୀ

ନିର୍ମଳା କୁମାରୀ ମହାପାତ୍ର

କର୍ଣ୍ଣାଟକ ରାଜ୍ୟରେ ଉଡିପି ଏକ ପ୍ରସିଦ୍ଧ ତୀର୍ଥ। ଏଠାରେ ଅଛି ଭଗବାନ ଶ୍ରୀକୃଷ୍ଣଙ୍କର ମନ୍ଦିର। ପ୍ରତ୍ୟହ ଏଠାକୁ ହଜାର ହଜାର ଯାତ୍ରୀ ଆସନ୍ତି। ଅନେକ ଦିନ ତଳର କଥା। ଶିମାଗୋ ଅଞ୍ଚଳରୁ କେତେକ ତୀର୍ଥଯାତ୍ରୀ ଉଡିପି ଅଭିମୁଖେ ଯାତ୍ରା ଆରମ୍ଭ କରିଥାନ୍ତି। ସେମାନଙ୍କ ଭିତରେ ଥିଲେ ଶ୍ରୀଗୋପାଳ ଆଦିଗା। ସେ ଦେଖିଲେ ବୁଢ଼ୀଟିଏ ଯାତ୍ରୀଙ୍କ ସଙ୍ଗେ ଯାଉଛନ୍ତି। ହାତରେ ଧରିଛନ୍ତି ପଚା ବନ୍ଧାକୋବିଟିଏ। ଆଦିଗା ବୁଢ଼ୀମାଉସୀଙ୍କୁ ପଚାରିଲେ-- "ମାଆ, ଏ ପଚା ବନ୍ଧାକୋବି କାହିଁକି ନେଉଛ ? ଏହା ତ ରନ୍ଧାଯିବା ଅବସ୍ଥାରେ ନାହିଁ। ଯାହାକୁ କ'ଣ କେମିତି ଖିଆଯାଇ ପାରିବ ?

ବୁଢ଼ୀଙ୍କ ଆଖିରୁ ଲୁହ ଝରିଗଲା। କୋହ ସମ୍ବରଣ କରି ସେ କହିଲେ-- "ମୁଁ ଆଉ କ'ଣ କରିପାରିବିରେ ପୁଅ । ଘରେ ମୋର ତିନିଜଣ ଝିଅ। ଖାଇବାକୁ ନାହିଁ, ତିନିଦିନ ହେଲା ଉପାସ। ଯାହାକୁ ସିଝାଇ ସମ୍ବର କଲେ ଖାଇବୁ। ଅତି ଗରିବ ଅବସ୍ଥା। ଜୀବନ ଆମ ପକ୍ଷେ ବୋଝ। ପିଲା ତିନିଟାଙ୍କୁ ତ କେମିତି ହେଲେ ଖୁଆଇ ବଞ୍ଚାଇବି।"

ଆଦିଗାଙ୍କ ହୃଦୟ ତରଳିଗଲା। ସେ ବୁଢ଼ୀମାଉସୀଙ୍କୁ କହିଲେ- "ମୁଁ ଉଡିପି ଯାଉଛି। ମୋ' ପାଖରେ କିଛି ଅର୍ଥ ଅଛି। ମୁଁ ତୁମକୁ ଦେବି। ତୁମେ ବରଂ ସେଇଥିରେ କିଛି ଭଲ ଜିନିଷ କିଣି ଝିଅମାନଙ୍କୁ ଖାଇବାକୁ ଦେବ।"



ତୁମର ଭକ୍ତିରେ ମୁଁ ଦ୍ରବୀଭୂତ । ତୁମର ଦୟା, ଉଦାରତା, ଦାନଶୀଳତାରେ ମୁଁ ମୁଗ୍ଧ। ତୁମ ଉପରେ ମୋର ଆଶିଷ ସବୁବେଳେ ରହିଛି।''

ଆଦିଗାଙ୍କର ନିଦ ଭାଙ୍ଗିଗଲା । ସେ ଭାବିହେଲେ- ହଁ, ହଁ ସେ ଠିକ୍ କରିଛନ୍ତି। ପୃଥିବୀର ସବୁଠି ଈଶ୍ୱର ଥିବାର ଅନୁଭବ ହେଲା । ଈଶ୍ୱର ସର୍ବବ୍ୟାପୀ । ଦୟା-ଉଦାରତା ହୃଦୟରେ ଥିଲେ ମଣିଷ ଦେବତା ପାଲଟେ।

*ସେକ୍ଟର- ୨/୪୨୬, ନୀଳାଦ୍ରିବିହାର, ଭୁବନେଶ୍ୱର- ୨୧*

ତୀର୍ଥଯାତ୍ରୀ ଆଦିଗାଙ୍କ କଥାରେ ବୁଢ଼ୀଙ୍କର ମନ ଭରିଗଲା । ସେ ଖୁସି ହୋଇଗଲେ। ଆଦିଗାଙ୍କଠାରୁ ଧନ ଗ୍ରହଣ କରି ବଡ଼ ସନ୍ତୋଷରେ ଘରକୁ ଆସିଲେ।

ଆଦିଗା ତାଙ୍କ ତୀର୍ଥଯାତ୍ରା କାର୍ଯ୍ୟକ୍ରମକୁ କାଟଛାଣ୍ଟ କରି ଘରକୁ ଫେରିଲେ, କାରଣ ଉଡିପି ଯିବା ପାଇଁ ତାଙ୍କ ହାତରେ ଆଉ ଅର୍ଥ ନ ଥିଲା। ଆଦିଗା ରାତିରେ ଘରେ ଶୋଇଥା'ନ୍ତି । ସ୍ୱପ୍ନ ଦେଖିଲେ-- ଭଗବାନ ଶ୍ରୀକୃଷ୍ଣ ତାଙ୍କୁ କହୁଛନ୍ତି-- ''ତୁମର ଉଡିପି ଯାତ୍ରାପଥରେ ବୁଢ଼ୀ ବେଶରେ ମୁଁ ତୁମ ସାମନାକୁ ଯାଇଥିଲି। ଅନ୍ୟ ଯାତ୍ରୀମାନଙ୍କୁ ମଧ୍ୟ ଭେଟିଁଛି। କେହି ଚାହିଁଲେ ନାହିଁ। କେବଳ ତୁମେ ହିଁ ମୋର ଦାରିଦ୍ର୍ୟର କାହାଣୀ ଶୁଣିଲ। ତୁମ ହୃଦୟରେ ଦୟାଧର୍ମ ଅଛି। ତୁମେ ହିଁ ତୀର୍ଥଯାତ୍ରା ଅଧାରୁ ବନ୍ଦ କରି ମୋତେ ଧନ ଦେଲ। ସାହାଯ୍ୟ କଲ। ମୋ' ଆଶିଷ ପାଇବା ପାଇଁ କୌଣସି ତୀର୍ଥଯାତ୍ରା କରିବା ଅନାବଶ୍ୟକ। ଯଦି ଜଣେ ତା'ର କର୍ତ୍ତବ୍ୟ ଠିକ୍ ଠିକ୍ କରୁଛି, ଦାନ-ଧର୍ମ ଜାରି ରଖିଛି, ତେବେ ସେ ଯେ କୌଣସି ସ୍ଥାନରେ ମୋର ଆଶିଷ ପାଇ-ପାରିବ। ପୃଥିବୀର ଯେ କୌଣସି ସ୍ଥାନରେ ତୁମେ ଈଶ୍ୱରଙ୍କୁ ଲାଭ କରିପାରିବ। କେବଳ ଅଜ୍ଞାନ ହିଁ ଭାବେ ଯେ ଏକ ନିର୍ଦ୍ଦିଷ୍ଟ ସ୍ଥାନକୁ ଧର୍ମ ନିମନ୍ତେ ଯିବା ଦରକାର।




''ନମ୍ରତା ମନୁଷ୍ୟର ଶ୍ରେଷ୍ଠ ଗୁଣ।'' ହୋଟେଲ୍‌ରେ ଲେଖାଥିବା ବୋର୍ଡ୍‌କୁ ଦେଖେଇ ଗ୍ରାହକ ହୋଟେଲ୍ ବୟ୍‌କୁ କହିଲେ, ''ତୁମ ମାଲିକ ତ ବହୁତ ବଦ୍‌ରାଗୀ ଜଣା-ପଡୁଛନ୍ତି। କଥାକଥାକେ ଗ୍ରାହକମାନଙ୍କ ସହିତ ଝଗଡ଼ା କରୁଛନ୍ତି। ସେଭଳି କ୍ଷେତ୍ରରେ ଏଇ ବୋର୍ଡ୍ ଟଙ୍ଗେଇବା କି ଆବଶ୍ୟକ ଥିଲା ?''

''କ୍ଷମାକରିବେ ଆଜ୍ଞା, ବୋର୍ଡ୍ ଗ୍ରାହକମାନଙ୍କ ପାଇଁ ଉଦ୍ଦିଷ୍ଟ, ମାଲିକଙ୍କ ପାଇଁ ନୁହେଁ।''

❖ ❖ ❖ ❖

ପ୍ରଥମ ପାଗଳ- ତୁ କ'ଣ ଲେଖୁଛୁ ?

ଦ୍ୱିତୀୟ ପାଗଳ- ମୁଁ ମୋ ନିଜ ପାଖକୁ ଚିଠି ଲେଖୁଛି ।

ପ୍ରଥମ ପାଗଳ- କ'ଣସବୁ ସେ ଚିଠିରେ ଲେଖୁଛୁ ?

ଦ୍ୱିତୀୟ ପାଗଳ- ଏବେ କେମିତି କହିବି ? ଚିଠି ସିନା ମୋ ପାଖରେ ପହଞ୍ଚିଲେ ପଢ଼ିକି କହିବି ?

# ରଙ୍ଗର ଭଣ୍ଡାର ପର୍ବତ ଶୃଙ୍ଗ

ଡକ୍ଟର ସୁବାସିନୀ ଲେଙ୍କା

ପୃଥିବୀର ବୈଚିତ୍ର୍ୟପୂର୍ଣ୍ଣ ଭୂଗୋଳକୁ ଅନୁଧ୍ୟାନ କଲେ ଅନେକ ବିଷୟରେ ଆମେ ଅବଗତ ହେଉ । ଶୁଷ୍କ, କର୍କଶ ପାହାଡ଼ ଦେଖିବାକୁ ଆମକୁ ରସହୀନ ଲାଗିଲେ ମଧ୍ୟ ବେଳେବେଳେ ଏହା ସବୁଜ ବନାନୀଭରା ହୋଇ ଶୋଭାମୟ ଦିଶେ । ପ୍ରକୃତିର ଏହି ରମ୍ୟରଚନା ମୁନି, ଋଷି ଓ ଦାର୍ଶନିକ ଏବଂ ପ୍ରକୃତି ପିପାସୁମାନଙ୍କୁ ତା' କୋଳକୁ ଆକୃଷ୍ଟ କରେ । ତେଣୁ ଲକ୍ଷ ଲକ୍ଷ ଲୋକ ଧାଇଁଯାଆନ୍ତି ପ୍ରକୃତିର ଏହି ନିଆରା ସୃଷ୍ଟି ଉପଭୋଗ କରିବା ପାଇଁ ଏବଂ ତାହାରି ଭିତରେ କିଛି ସମୟ ହଜିଯିବା ପାଇଁ । ବେଳେବେଳେ ସମତଳ ସ୍ଥଳଭାଗ ଓ ଜଳଭାଗଠାରୁ ଅଧିକ ଉପଭୋଗ୍ୟ ହୋଇଥାଏ ଏହି ନିଷ୍ଠୁର ପର୍ବତମାଳା । ଆଖି ପାଉ ନ ଥିବା ପର୍ବତମାଳା ରହିଯାଏ ଆଖିରେ । ଭୁଲିହୁଏନି ସେ ଦୃଶ୍ୟ । କେତେକ ପର୍ବତ ବିଭିନ୍ନ ରଙ୍ଗରେ ସତେ ଯେମିତି ଗାଧୋଇ ପଡ଼ିଥାନ୍ତି । ରଙ୍ଗର ମେଖଳା ଦର୍ଶକଙ୍କୁ କରେ ଆକୃଷ୍ଟ । ଶୁଷ୍କ ବନ୍ଧୁର ପୃଷ୍ଠରେ ପୁଣି ରଙ୍ଗର ଆସ୍ତରଣ । ପ୍ରକୃତି ଯେମିତି ରଙ୍ଗ ତୂଳିରେ ଆଙ୍କି ଦେଇଥାଏ ଇନ୍ଦ୍ରଧନୁ । ସୃଷ୍ଟିର କି ବିଚିତ୍ରତା !

ସାତରଙ୍ଗରେ ରଙ୍ଗାୟିତ ହୋଇ ଇନ୍ଦ୍ରଧନୁର ରୂପ ଧାରଣ କରିଥିବା ପର୍ବତମାଳା ଦୃଶ୍ୟମାନ ହୁଏ ଚୀନ୍ ଦେଶର ଗନସୁ ପ୍ରଦେଶରେ । ଏହି ପ୍ରଦେଶର ଝାଙ୍ଗେୟେ ସହର ନିକଟରେ 'ରେନ୍‌ବୋ ମାଉଣ୍ଟେନ୍' ଅବସ୍ଥିତ । ଏହା ଝାଙ୍ଗେୟ୍ ଦାଂଜିଆ ପର୍ବତମାଳା ନାମରେ ବିଖ୍ୟାତ । ଇନ୍ଦ୍ରଧନୁ ଭଳି ଏହି ପର୍ବତର ରଙ୍ଗ । ଏହା ଘଞ୍ଚ ଜଙ୍ଗଲରେ ପରିପୂର୍ଣ୍ଣ । ଏହି ପର୍ବତମାଳା ସାତ ରଙ୍ଗରେ ରଙ୍ଗାୟିତ । ଏହା ୩୦୦ ବର୍ଗକିଲୋମିଟର ଯାଏଁ ପରିବ୍ୟାପ୍ତ । ଇନ୍ଦ୍ରଧନୁରେ ଥିବା ସାତ ରଙ୍ଗର ଥିବା ସରୁ ସରୁ ଲମ୍ବା ଗାର ଏହି ପର୍ବତମାଳା ଉପରେ ପଡ଼ିଥାଏ । ଏହା ଚୀନ୍‌ର ଭୌଗୋଳିକ ପାର୍କ ଭାବରେ ପ୍ରସିଦ୍ଧି ଲାଭ କରିଛି ।

ପର୍ବତମାଳାର ଶୀର୍ଷଦେଶରେ ସାତ ରଙ୍ଗର ଚମକ୍ରିତା ବିଷୟରେ ଭୂ-ବିଜ୍ଞାନୀମାନେ ମତ ଦେଇଛନ୍ତି ଯେ ଏହି ପର୍ବତମାଳାରେ ସ୍ତର ସ୍ତର ହୋଇ ରହିଛି ଖଣିଜ ପଦାର୍ଥ ଓ ବାଲିଆ ପଥର । ବର୍ଷା ହେଲେ ବାଲିଆ ପଥର ଖଣିଜ ପଦାର୍ଥ ସଂସ୍ପର୍ଶରେ ଆସି କଳଙ୍କି ଲାଗିଲା ଭଳି ଦେଖାଯାଏ । ସୂର୍ଯ୍ୟକିରଣ ପଡ଼ିଲେ ଏଗୁଡ଼ିକ ଚକ୍‌ଚକ୍ କରେ । ଦୂରରୁ ସମୁଦ୍ରର ରଙ୍ଗିନ୍ ଢେଉ ଭଳି ଦିଶେ । ଏହି ପର୍ବତମାଳା ଖୁବ୍ ଶୁଷ୍କ ଓ ଲଣ୍ଡା ହୋଇଥିବାରୁ ଗୁଳ୍ମ ଓ ଲତା ଦୃଶ୍ୟମାନ ହୁଅନ୍ତି ନାହିଁ । ଏହାର ପ୍ରତି ସ୍ତର ରଙ୍ଗିନ୍ ଦିଶେ । ଏହି ପର୍ବତମାଳା ମଝିରେ ମଝିରେ ଛୋଟ ଛୋଟ ଝରଣା ଦେଖିବାକୁ ମିଳେ । ଏହାର ଜଳ ସହିତ ଖଣିଜ ପଦାର୍ଥ ମିଶିଥିବାରୁ ଏହା ବିଷାକ୍ତ, ପାନୀୟ ଉପଯୋଗୀ ନୁହେଁ । ଏହି ପର୍ବତମାଳାର ସ୍ୱରୂପ ଅତି ବିଚିତ୍ର । ଚଟାଣ ଅସମାନ ଓ ପଥୁରିଆ । ସ୍ଥାନେ ସ୍ଥାନେ ଶହ ଶହ ମିଟର ଉଚ୍ଚ ଏବଂ ସ୍ଥାନେ ସ୍ଥାନେ ଡାଲୁ । ଏହି ପର୍ବତମାଳାର ବୈଶିଷ୍ଟ୍ୟ ନ ଦେଖିଲେ ଅନୁଭବ କରି ହେବନାହିଁ । ଏଠାରେ ରଙ୍ଗିନ୍ ପଥର, କାଛ, ପଥରଖମ୍ବ ପଥର ଶୃଙ୍ଗ ସହ ଢେଉଢେଉକା ଛୋଟ ଛୋଟ ପର୍ବତମାଳା ଚାରିଆଡ଼କୁ ବିଛାଡ଼ି ହୋଇ ରହିଛି । ସ୍ଥାନ ସ୍ଥାନେ

ଯାଆଁଳା ଶୃଙ୍ଗ ସିଧା ଆକାଶକୁ ଚାହିଁ ରହିଲା ଭଳି ଦେଖାଯାଏ । ଏତଦ୍‌ବ୍ୟତୀତ ବିଶାଳ ପର୍ବତମାଳା ସୁଉଚ୍ଚ ରାଜପ୍ରାସାଦ ଭଳି ଦଣ୍ଡାୟମାନ ହୋଇଥାନ୍ତି । ତେଣୁ ପ୍ରତି ମୁହୂର୍ତ୍ତରେ ଏହି ପର୍ବତମାଳାରେ ବିପଦର ଆଶଙ୍କା ଅଛି । ପର୍ବତଗୁଡ଼ିକ ସ୍ଥାନେ ସ୍ଥାନେ ଖୁବ୍ ଉଚ୍ଚ ତ ସ୍ଥାନେ ସ୍ଥାନେ ଖୁବ୍ ନୀଚ ହୋଇଥିବାରୁ ଉପତ୍ୟକା ଓ ଗିରିଶୃଙ୍ଗ ଭୟଙ୍କର ଓ ବିପଦପୂର୍ଣ୍ଣ । ଥରେ ଏଠାରେ ଗୋଡ଼ ଖସିଗଲେ ମୃତ୍ୟୁ ସୁନିଶ୍ଚିତ ।

ଚୀନ୍‌ର ଗୁଆଙ୍ଗଡ଼ଙ୍ଗ ପ୍ରଦେଶରେ ଆଉ ଗୋଟିଏ ପର୍ବତ । ଏହା ରେଡ୍‌ଷ୍ଟୋନ୍ ପାର୍କ ନାମରେ ମଧ୍ୟ ପ୍ରସିଦ୍ଧିଲାଭ କରିଛି । ଏଠାରେ ଲାଲ୍ ପଥରଯୁକ୍ତ ପର୍ବତମାଳା ଦେଖିବାକୁ ମିଳେ । ୧୯୩୦ ମସିହାରେ ଚୀନ୍‌ର ଭୂବିଜ୍ଞାନୀ ଓ ଭୂଗୋଳବିତ୍‌ମାନେ ଏବଂ ଚାଇନିଜ୍ ବିଜ୍ଞାନ ଏକାଡେମୀର ସଭ୍ୟ ପ୍ରଫେସର ଚେଙ୍ଗୁଓଡ଼ା ଏହି ପର୍ବତମାଳାର ଭୌଗୋଳିକ ତଥ୍ୟମାନ ପ୍ରଦାନ କରିଥିଲେ । ବିଗତ ୭୦ବର୍ଷ ଭିତରେ ଭୂବିଜ୍ଞାନୀ ଓ ଭୂଗୋଳବିଦ୍‌ମାନେ ଦକ୍ଷିଣପୂର୍ବ ଚାଇନାର ୭୧୫ଟି ଦାଂଜିଆ ପର୍ବତମାଳା ଆବିଷ୍କାର କରି ସେମାନଙ୍କ ଉପରେ ଗବେଷଣା ଜାରି ରଖିଛନ୍ତି । ସେମାନଙ୍କ ମତରେ-- ଏହି ପର୍ବତମାଳାର ଉଚ୍ଚ ଗିରିଶୃଙ୍ଗ ସବୁ ଲାଲ୍ ବାଲିଆ ପଥରରେ ତିଆରି ହୋଇଛି ।

୧୦୦ ମିଲିୟନ ବର୍ଷ ପୂର୍ବେ ଏହି ଅଞ୍ଚଳ ଏକ ବିରାଟ ଜଳାଶୟ ଥିଲା । ଏହି ଜଳାଶୟ ଭିତରେ ଜଳର ପ୍ରବାହ ଥିଲା । ତେଣୁ ବାହାରର ମୃତ୍ତିକା ଜଳ ଭିତରକୁ ପ୍ରବେଶ କରି ଜମାଟ ବାନ୍ଧିଲା ଓ କ୍ରମଶଃ କଠିନ ଅଂଶରେ ପରିଣତ ହେଲା । ସୂର୍ଯ୍ୟଙ୍କ କିରଣର ତାପମାତ୍ରା ଯୋଗୁଁ ଜଳାଶୟ ଶୁଷ୍କ ହୋଇଗଲା ଓ ଜଳାଶୟର ନିମ୍ନ ଅଞ୍ଚଳରେ ବସି ରହିଥିବା ଖଣିଜ ମାଟି ଜାରିତ ହୋଇ ରଙ୍ଗିନ ପଥରରେ ପରିଣତ ହେଲା । ୭୦ମିଲିୟନ ବର୍ଷ ପୂର୍ବେ ଜଳାଶୟ ମଧ୍ୟରେ ୩,୭୦୦ ମିଟର ଏକ ଲାଲ୍ ରଙ୍ଗର ସ୍ତର ସୃଷ୍ଟି ହେଲା, ଯାହାକୁ ଭୂବିଜ୍ଞାନୀମାନେ ଚକ୍‌ବେଡ୍ କହନ୍ତି । ଏହାର ଶୀର୍ଷରେ ୧,୩୦୦ ମିଟର ଚଉଡ଼ାର କଠିନ ଆବରଣ ସୃଷ୍ଟି ହେଲା । ଜୁରସିକ୍ ଓ ଟେରୀଟୋରୀ ଯୁଗର ମଧ୍ୟଭାଗରେ ଅର୍ଥାତ୍ ମେସୋଜୋଇକ୍ ଯୁଗର ଶେଷଭାଗ ଆଡ଼କୁ ଏହା ଧୀରେ ଧୀରେ ପର୍ବତମାଳାର ଆକାର ଧାରଣ କରି ଗିରିଶୃଙ୍ଗରେ ପରିଣତ ହେଲା । ଏହି ପର୍ବତମାଳା ୧୦ହଜାର ବର୍ଷରେ ପ୍ରାୟ ୦.୮୭ମିଟର ବୃଦ୍ଧି ପାଇ ଆସୁଛି ଏବଂ ଭୂବିଜ୍ଞାନୀଙ୍କ ମତରେ ଏହା ଏବେ ମଧ୍ୟ ବୃଦ୍ଧି ହେଉଛି ।

ଏତଦ୍‌ବ୍ୟତୀତ କାନାଡ଼ାର ବ୍ରିଟିଶ କଲମ୍ବିଆରେ ଆଗ୍ନେୟଗିରି ଉଦ୍‌ଗିରଣ ହୋଇ ବାହାରିଥିବା ପଥରଖଣ୍ଡଗୁଡ଼ିକ ଖଣିଜ ପଦାର୍ଥ ସଂସ୍ପର୍ଶରେ ଆସିବାରୁ ପର୍ବତମାଳାର ରଙ୍ଗ ଲାଲ୍ ହୋଇଥିବାର ଦେଖାଯାଏ ବୋଲି ଭୂବିଜ୍ଞାନୀମାନେ ମତ ଦେଇଛନ୍ତି ।

ଏହିସବୁ ପର୍ବତମାଳା ସୂଚାଇଦିଏ ଯେ ଫୁଲପତ୍ର ଇତ୍ୟାଦି କେବଳ ରଙ୍ଗର ଭଣ୍ଡାର ନୁହେଁ, ଅନେକ କଠିନ ପର୍ବତମାଳା ମଧ୍ୟ ରଙ୍ଗର ଗନ୍ତାଘର ଅଟନ୍ତି ।

*ସ୍ୱାତୀ ଭବନ, ଷ୍ଟେସନ ବଜାର, କଟକ-୩* **

---




★ ବିଶ୍ୱ ପ୍ରେସ୍ ସ୍ୱାଧୀନତା ଦିବସ (World Press Freedom Day) ପ୍ରତିବର୍ଷ ମଇ ମାସ ତିନି ତାରିଖରେ ପାଳନ କରାଯାଇଥାଏ ।

★ 'ASHA' ର ପୂର୍ଣ୍ଣରୂପ ହେଉଛି Accredited Social Health Activist.

★ ପୋଇପତ୍ର (Spinach Leaves) ରେ ଲୌହସାର (Iron) ପ୍ରଚୁର ପରିମାଣରେ ଥାଏ ।



# ଖୋଜିଲେ ପାଇବ ତାକୁ

ଶ୍ରୀ ଚିତ୍ତରଂଜନ ପଟ୍ଟନାୟକ

ମଳୟ ଖୋଜିଲି ଚନ୍ଦନ ବଣରୁ    ଫୁଲରୁ ଖୋଜିଲି ବାସ,
ତୁଣ୍ଡରୁ ଖୋଜିଲି ମିଠା ମିଠା କଥା    ଓଠୁ ଦରଫୁଟା ହାସ।
ମଧୁପେ ଖୋଜିଲି ମଧୁର ଗୁଂଜନ    ପକ୍ଷୀଠୁ ଖୋଜିଲି ଗୀତି,
ମାଆଠୁ ଖୋଜିଲି ଆଦର ସୋହାଗ    ମମତା ବନ୍ଧନ ପ୍ରୀତି ।
ସାଗରେ ଖୋଜିଲି ମୁକୁତା ମାଣିକ    ନଦୀରେ ଖୋଜିଲି ନାଆ,
ସକାଳ ସଞ୍ଜରେ ଖୋଜିଲି ମନରେ    ମନମତାଣିଆ ବାଆ ।
କାତରେ ଖୋଜିଲି ଜଳର ଗଭୀର    ଜାଲରେ ଖୋଜିଲି ମୀନ,
ମହତ ଜନଠୁ ଖୋଜିଲି ଆଶିଷ    ଶୁଭରେ କଟିବ ଦିନ ।
ଶୀତରେ ଖୋଜିଲି ଖରାର ଚନ୍ଦନ    ନିଦାଘେ ଖୋଜିଲି ଜଳ
ସହରେ ଖୋଜିଲି ନରିଜନେ ବସି    ଗାଆଁ ମାଟି ପରିମଳ ।
ଅନ୍ଧାରେ ଖୋଜିଲି ଆଲୋକର ଧାରା    ବହିରୁ ଖୋଜିଲି ଜ୍ଞାନ,
ପୋଥିରୁ ଖୋଜିଲି ଅମୃତର ବାଣୀ    ମନ ଚଇତନ ଧ୍ୟାନ ।
ଆକାଶେ ଖୋଜିଲି ଗ୍ରହନକ୍ଷତ୍ରଙ୍କୁ    ଜୋଛନା ଖୋଜିଲି ଜ୍ଞାନ,
ସବୁଜ ସୁଷମା ଖୋଜିଲି ବନରେ    ନାନା ଜାତି ବୃକ୍ଷଗଣେ ।
ଶତ୍ରୁକୁ ଖୋଜିଲି ସୀମାନ୍ତ ଘାଟୀରେ    ଖୋଜିଲି ବନ୍ଧୁକ ଗୁଳି,
ଦେଶମାତୃକାକୁ ଖୋଜିଲି ମନରେ    ହୃଦୟ ଉଠିଲା ଫୁଲି ।
ମନ୍ଦିରେ ଖୋଜିଲି ଏ ମାଟିର କଳା    ନିହାଣ ମୁଗୁର କଥା,
ବାଟରେ ଖୋଜିଲି ବରଗଛ ଛାଇ    ମେଣ୍ଟିବ ସକଳ ବ୍ୟଥା।
ଗୀତାରୁ ଖୋଜିଲି ନିରିଗୁଣ ବ୍ରହ୍ମ    ଭକତର ଭାବଧାରା,
ସପନେ ଖୋଜିଲି ନିଦମାଉସୀକୁ    ଶୋଇ ଶୋଇ ରାତିସାରା ।
ଖୋଜିଲେ ପାଇବୁ ଉତ୍ତମ ଦରବ    ସାଇତିବୁ ସବୁ ଦିନେ,
ସୁନାକୁ ଯେପରି ବଣିଆଁ ଚିହ୍ନୁଛି    ଗୁଣକୁ ସଜ୍ଜନ ଚିହ୍ନେ ।

*'ନିଗମ ନିବାସ', ଘଟୁକେଶରୀ, ନରଣପୁର, କେନ୍ଦୁଝର*

***

# ଭାସିଲିସାର କଣ୍ଢେଇ-୪

ଶ୍ରୀ ପ୍ରମୋଦ ଚନ୍ଦ୍ର ପଟ୍ଟନାୟକ

ମୋଟୀ ସ୍ତ୍ରୀଲୋକଟା ଯାଇ ବାବାଜଗାର ପାଦ ଆଉଁସି ଦେବାରୁ ସେ ଆହୁରି ଜୋର୍‌ରେ ଘଂଘୁଡ଼ି ମାରିଲା । ଭାସିଲିସା ଦେଖିଲା ଯେ ଅସୁରୁଣୀ ପାଖରୁ ଖସିବା ପାଇଁ ଏଇଟା ହିଁ ସୁଯୋଗ । ତା' ନହେଲେ ଉଠି ପଡ଼ିଲେ ରୋଷ୍ଟ୍ ନ ହେଲେ ବି ମତେ ସେ କଞ୍ଚା ଖାଇବ।

ଏମିତି ବିଚାର କରି ଆଗ ସେ ଧାଇଁଲା ବାବାଜଗର ବିରାଡ଼ି ପାଖକୁ । ତାକୁ ଦେଖୁ ଦେଖୁ ବାବାଜଗାର ଭୁଆ ବିରାଡ଼ିଟା ଭାସିଲିସା ଉପରକୁ ଝାଂପ ମାରିବାକୁ ପ୍ରସ୍ତୁତ । ଭାସିଲିସା ମଧ୍ୟ ଏକଥା ଆଗରୁ ଜାଣିଥିଲା । ତେଣୁ ସେ ଡେରି ନ କରି ତା ଉପରକୁ ଫିଙ୍ଗିଦେଲା ଖଣ୍ଡେ ରୁଟି । ରୁଟିଖଣ୍ଡକ ପାଇ ଭୂଆଁ ବିରାଡ଼ିଟା ଖାଇବାରେ ଲାଗିଲା । ଏଇ ସୁଯୋଗରେ ଭାସିଲିସା ଯେମିତି ଘରୁ ଯିବା ପାଇଁ ଗୋଡ଼ କାଢ଼ିଛି, ଡାହାଳ କୁକୁରଟା ଝପଟି ଆସିଲା । ଆଉ କିଛି ଉପାୟ ନ ପାଇ ଭାସିଲିସା କଣ୍ଢେଇ ପାଇଁ ରଖିଥିବା ବାକି ରୁଟିଖଣ୍ଡକ ତା' ଉପରକୁ ଫିଙ୍ଗିଦେଲା । ସତେଯେମିତି କେତେ ଦିନ ହେଲା କୁକୁର କିଛି ଖାଇ ନ ଥିଲା, ସେମିତି ସେ ରୁଟିଖଣ୍ଡକ ପାଇ ଚୋବେଇ ଚୋବେଇ ଲାଗିଗଲା ଖାଇବାକୁ । ଭୁଲିଗଲା ବାବାଜଗା ତାଗିଦ୍ କରିଥିବା କଥା । ଡେରି ନ କରି ଭାସିଲିସା ଧାଇଁଲା ବାବାଜଗାର ଫାଟକ ଆଡ଼କୁ । ଫାଟକ ପାଖରେ ଥିବା କଣ୍ଟା ଗଛର ଡାଳଗୁଡ଼ାକ ଦୋହଲିବାକୁ ଲାଗିଲା । ସେଥିପାଇଁ ଭାସିଲିସା ପ୍ରସ୍ତୁତ ଥିଲା । ତେଣୁ ତା ମୁଣ୍ଡରୁ ରଂଗିନ୍ ରିବନ୍‌ଟା ଫିଟେଇ ବାନ୍ଧିଦେଲା ଏକାଠି କରି । ଫାଟକ ନ ଫିଟିବାରୁ ତା ମୁଣ୍ଡରୁ ତେଲ ପୋଛି ପୋଛି ଫାଟକର କବଜାରେ ଲଗେଇଦେଲା । ତେଲ ଲାଗିଯିବାରୁ ଫାଟକକୁ ବଡ଼ ଆରାମ ଲାଗିଲା । ତେଣୁ ଫିଟିଯାଇ ଛାଡ଼ିଦେଲା ଭାସିଲିସାକୁ ।

ଭାସିଲିସା ଫାଟକ ବାହାରକୁ ସିନା ଚାଲିଆସିଲା । ଚାରିଆଡ଼ କିଟିକିଟି ଅନ୍ଧାର । ଆଗକୁ ପାଦେ ବଢ଼ିବା ସମ୍ଭବ ନ ଥିଲା । ତେଣେ ଡେରି ହେବାରୁ ବଦ୍‌ରାଗୀ ସାବତ ମା' କଥା ମନେପକେଇ ତା' ହାଲୁକ ଶୁଖିଲା । ଗୋଟିଏ ବିପଦରୁ ରକ୍ଷା ପାଇ ଆଉ ଗୋଟିଏ ବିପଦ ଆଶଂକାରେ ଭାସିଲିସାର ଛାତି ଥରିଲା । ଏତିକିବେଳେ କଣ୍ଢେଇଟା ଯାଇ ଫାଟକରୁ ଖପୁରୀ ଧରି ଆସିଲା । ସେ ଖପୁରୀର ଆଖି କୋରଡ଼ରେ ଖଣ୍ଡେ କାଠି ଗେଞ୍ଜି ଦେବାରୁ ଆଖି କୋରଡ଼ରୁ ଦପ୍ ଦପ୍ ହୋଇ ଆଲୁଅ ବାହାରିଲା । ସେ ଆଲୁଅରେ ଜଂଗଲଟା ରାସ୍ତା ଦେଖାଗଲା । ଆଲୁଅ ଦେଖାଯିବାରୁ ଭାସିଲିସା ଜଲଦି ଜଲଦି ପାଦ ପକେଇଲା ଯେମିତି ଶୀଘ୍ର ଘରେ ପହଞ୍ଚିବ ।



ତେଣେ ବାବାଜଗାର ଭାଂଗିଗଲା ନିଦ । ଭିଡ଼ିମୋଡ଼ି ହେଲା । ଉଠିଲା ପରେ ଜାଣିଲା ଯେ ଭାସିଲିସା ମାରିଛି ଛୁ । ରାଗ ତମତମରେ ଆଗ ଧାଇଁଗଲା ଭୁଆ ବିରାଡ଼ି ପାଖକୁ । ଭାସିଲିସାକୁ କେମିତି ଛାଡ଼ିଦେଲୁ ବୋଲି ପଚାରିଲା । ଆଉ ତାକୁ ଖଣ୍ଡିଆଖାବରା କରିଛୁ କି ନାହିଁ ଧମକେଇବାରୁ ଭୁଆ ବିରାଡ଼ିଟା କହିଲା, "ନା ମୁଁ ଭୋକରେ ଥିଲି । ମୋତେ ସେ ରୁଟି ଖଣ୍ଡେ ଦେବାରୁ ଭୁଲିଗଲି ମୋ କାମ । ଏତେ ଦିନ ଧରି ଏଠି ଖଟି ଖଟି କେବେ ବି ରୁଟି ଟୁକୁରାଟେ ମିଳି ନ ଥିଲା ଖାଇବାକୁ, ତେଣୁ ମୋ ଦେହରେ ବଳ ବି ନ ଥିଲା କାମ କରିବା ପାଇଁ ।"

ଭୁଆବିରାଡ଼ିର କଥା ଶୁଣି ବାବାଜଗାର ରାଗ ଆହୁରି ବଢ଼ିଗଲା । ଧାଇଁଲା ତା' ପୋଷା କୁକୁର ପାଖକୁ । କୁକୁରଟା ବାବାଜଗାର ଖୁବ୍ ବିଶ୍ୱାସୀ ଥିଲା । ତେଣୁ ସେ ତାକୁ କାମୁଡ଼ାକାମୁଡ଼ି କରି ନିଶ୍ଚୟ ଅଚେତ୍ କରି ଦେଇଥିବ ବୋଲି ଭାବିଲା । କୁକୁରଟା ବି ଭୋକ ବିକଳରେ ଥିଲା । ବାବାଜଗା ନିଜେ ଡ୍ରମ ଡ୍ରମ କ୍ଷୀର ପିଉଥିବ ଆଉ ଗୋଟା ଗୋଟା ଜନ୍ତୁ ଖାଉଥିବ । କେବେହେଲେ ଟୋପାଏ କ୍ଷୀର କି ଖଣ୍ଡେ ହାଡ଼ ପକେଇଦେବ ନାହିଁ । ତେଣୁ ଭାସିଲିସାଠାରୁ ଖଣ୍ଡେ ରୁଟି ପାଇ ତାକୁ ଛାଡ଼ିଦେଲା ବୋଲି କହିବାରୁ ବାବାଜଗାର ରାଗ ଆଉ ଦେଖେ କିଏ ? ଏଥର ଧାଇଁଲା କଣ୍ଟା ଗଛ ପାଖକୁ । ଭାସିଲିସାକୁ କଣ୍ଟା ଡାଳରେ ପିଟି ପିଟି ଅସ୍ତବ୍ୟସ୍ତ କରି ଦେଇଛି କି ନାହିଁ ବୋଲି ପଚାରିବାରୁ ସେ ବି ମନା କଲା । କହିଲା, "ଏତେ ବର୍ଷ ହେଲା ତୋ ସେବା କରି ଆସୁଛି, ମୋତେ ଟିକେ ଆଦର କରିନୁ କି ମୋ ଡାଳରେ ଖଣ୍ଡେ କନା ବାନ୍ଧିନୁ । ଭାସିଲିସା ତା ସୁନ୍ଦର ରିବନ୍‌ଟା ବଡ଼ ଆଦରରେ ବାନ୍ଧି ଦେବାରୁ ତାକୁ ଛାଡ଼ିଦେଲି ।" ସେ ଆଉ କଣ କହିବାକୁ ଯାଉଥିଲା ।

ବାବାଜଗା ଶୁଣିବା ପାଇଁ ତାର ଧୈର୍ଯ୍ୟ ନ ଥିଲା । ଧାଇଁଗଲା ଫାଟକ ପାଖକୁ । ଭାସିଲିସା ଚାଲିଯିବା ପାଇଁ କେମିତି ଖୋଲିଗଲୁ ବୋଲି ପଚାରିବାରୁ ଫାଟକ କହିଲା, "ମୋ କବଜାରେ ତେଲ ମାରିଦେବାରୁ ଆପେ ଆପେ ଖୋଲିଗଲା ।" ଏଥର ରାଗରେ ଥରିଲା ବାବାଜଗା । ଦାନ୍ତ କଡ଼ମଡ଼ କରି ଗୋଟେ ଝାଡୁରେ ପିଟି ପିଟି ଭୁଆ ବିରାଡ଼ିକୁ ଦରମରା କରିଦେଲା । ଖଣ୍ଡେ ପାଞ୍ଚଣରେ ବାଡ଼େଇ ବାଡ଼େଇ କରିଦେଲା ବେହୋସ । କଟୁରୀରେ ହାଣିଦେଲା କଣ୍ଟା ଗଛଟାକୁ । ଶାବଳ ଧରି ଫାଟକଟାକୁ ତାଡ଼ି ଟୁକୁରା ଟୁକୁରା କରିଦେଲା ।

ବାବାଜଗା ଭୟରେ ଭାସିଲିସା ଏକମୁହାଁ ଚାଲିଥାଏ ତା' ଘରକୁ । ଘରେ ପହଞ୍ଚିଲା ବେଳକୁ ଘର ଅନ୍ଧାର । ଭାସିଲିସାକୁ ଦେଖୁ ଦେଖୁ ସାବତ ଭଉଣୀ ଦିହେଁ ଧାଇଁଆସି ଆରମ୍ଭ କରିଦେଲେ ଗାଳିଗୁଲଜ । ଗାଳିଗୁଲଜର କାରଣ ସେ ଏତେ ଡେରି କାହିଁକି କଲା । ସେମାନେ ଅବଶ୍ୟ ପଡ଼ିଶା ଘରକୁ ଯାଇ ନିଆଁ ଆଣିଥିଲେ । ମାତ୍ର ସେ ନିଆଁ ଅଳ୍ପ ସମୟ ଭିତରେ ଲିଭିଗଲା । ଭାସିଲିସା ବାହାରେ ରଖି ଆସିଥିଲା ଖପୁରୀଟା । ତେଣୁ ବାହାରକୁ ଯାଇ ଧରି ଆସିଲା ଖପୁରୀଟାକୁ । ଖପୁରୀଟା ଯେମିତି ଭିତରକୁ ଆସିଛି, ତାର ଆଲୁଅ ଏତେ ଜୋରରେ ସାବତ ଭଉଣୀ ଦୁହିଁଙ୍କ ଉପରେ ପଡ଼ିଲା ଯେ ସେ ତେଜରେ ଭଉଣୀ ଦୁହେଁ ଜଳିଗଲେ । ସେମାନଙ୍କର ଦୁର୍ଦ୍ଦଶା ଦେଖି ଭାସିଲିସାର ସାବତ ମା' ଧାଇଁଆସିଲା ଭାସିଲିସାକୁ ମାରିବା ପାଇଁ । ଏବେ ଖପୁରୀର ଆଖି ପଡ଼ିଲା ସାବତ ମା' ଉପରେ । ସେ ବି ଜଳି ପାଉଁଶ

ହୋଇଗଲା । ଖପୁରୀର ନଜର ଆଉ କାହା ଉପରେ ପଡ଼ିବା ପୂର୍ବରୁ ଭାସିଲିସା ଖପୁରୀଟାକୁ ନେଇ ପୋତିଦେଲା ଦାଣ୍ଡ ଦୁଆର ତଳକୁ । କାରଣ ଭାସିଲିସା ହୋଇଗଲା ବେସାହାରା । ତାକୁ ବହୁତ ଦୁଃଖ ଲାଗିଲା ସମସ୍ତେ ମରିଯିବାରୁ ।

ଭାସିଲିସା ଯେଉଁ ଜାଗାରେ ଖପୁରୀଟାକୁ ପୋତିଥିଲା , ସେ ଜାଗାରେ ଗୋଟିଏ ଗୋଲାପଫୁଲ ଗଛ ଉଠିଲା । ଲାଲ ଗୋଲାପ । ଅତି ସୁନ୍ଦର । ମାତ୍ର ଏକୁଟିଆ ରହିବା ପାଇଁ ଭାସିଲିସାକୁ ଭଲ ଲାଗିଲା ନାହିଁ । ସେ ଘର ଛାଡ଼ି ଚାଲିଗଲା ନିକଟ ସହରକୁ । ସହରରେ ଥିଲା ଗୋଟେ ନିରାଶ୍ରୟା ବୁଢ଼ୀ । ଭାସିଲିସାକୁ ଦେଖି ତାକୁ ଆଶ୍ରୟ ଦେଲା । ବୁଢ଼ୀର ସରଳ ସ୍ୱଭାବ ଭାସିଲିସାକୁ ଭଲ ବି ଲାଗିଲା । ଦୁହେଁ ସାଥୀ ହୋଇ ଖୁସିରେ ଦିନ କାଟିଲେ । ମାତ୍ର ବସି ବସି ଭାସିଲିସାର ଦିନ ସରିଲା ନାହିଁ । ତେଣୁ ଦିନେ ଭାସିଲିସା କହିଲା ବୁଢ଼ୀକି, "ବସି



ବସି ମୋ ଦିନ ସରୁନି । ମୋ ପାଇଁ ବଜାରରୁ ତୁଳା ଆଣିଦବୁ । ଭଲ ତୁଳା । କାରଣ ମୋର ଦରକାର କାମ । ଭିଡ଼ କାମ ତ ହେଲେ ଆହୁରି ଭଲ ।" ଭାସିଲିସା କଥା ଶୁଣୁ ଶୁଣୁ ବୁଢ଼ୀ ଧାଇଁଗଲା ବଜାରକୁ । ବୁଲି ବୁଲି ବଜାରରୁ ସବୁଠାରୁ ଭଲ ତୁଳା କିଣି ଆଣିଲା । ଭାସିଲିସା ସେ ତୁଳାକୁ ଭିଣି ଭିଣି ତିଆରି କଲା ବେଶ୍ ସୂକ୍ଷ୍ମ ସୂତା । ସୂତା ତିଆରି ହୋଇଗଲା ପରେ ଦିନରାତି ଲାଗି ତନ୍ତ ଦ୍ୱାରା ବୁଣିଲା ଲୁଗା । ଗୋଟିଏ ପୋଖତ ତନ୍ତୀ ପରି ଏତେ ସୁନ୍ଦର ସୁନ୍ଦର ଲୁଗା ବୁଣିଲା ଯେ ଦେଖିଦେଲେ ଆଖି ଖୋସି ହୋଇଯିବ । ଲୁଗାଗୁଡ଼ାକ ନେଇ ବଜାରରେ ବିକ୍ରି କରିଦେବା ପାଇଁ ବୁଢ଼ୀକୁ କହିଲା । ବୁଢ଼ୀ ସେ ଲୁଗାଗୁଡ଼ାକ ଦେଖି ତା ଆଖି ଝଲସିଗଲା । କହିଲା , "ନାଇଁ ଲୋ ଝିଅ , ଏ ଲୁଗାଗୁଡ଼ାକ ଏତେ ସୁନ୍ଦର ହୋଇଛି ଯେ ଆମତମ ପରି ଲୋକ ଯୋଗ୍ୟ ହେବେ ନାହିଁ ଏ ଲୁଗା ପିନ୍ଧିବାକୁ । ଏତେ ଦାମ୍ ବି କେହି ଦେଇପାରିବେ ନାହିଁ । ଯାଉଛି ରାଜଉଆସକୁ ନେଇଯିବି ଯେ ରାଜକୁମାର କିଣିନେବେ ।"

ସତକୁ ସତ ବୁଢ଼ୀ ଲୁଗାଗୁଡ଼ାକ ଧରି ଚାଲିଗଲା ରାଜଉଆସକୁ । ଉଆସରେ ସେ ଲୁଗାକୁ ଦେଖିଦେଇ ରାଜକୁମାର ମନ୍ତ୍ରମୁଗ୍ଧ ହେଲା ପରି ଘଡ଼ିଏ ଚାହିଁ ରହିଲେ । ତା'ପରେ ବୁଢ଼ୀକି ପଚାରିଲେ ଲୁଗାର ଦାମ୍ । ବୁଢ଼ୀ କିଛି କହିଲା ନାହିଁ । କିଛି ନ କହିଲେ ବି ରାଜକୁମାର ବୁଢ଼ୀକି ଯଥେଷ୍ଟ ଟଙ୍କା ଦେଲେ, ଯାହା ବୁଢ଼ୀ ଆଶା କରି ନ ଥିଲା । ତା'ପରେ ରାଜକୁମାର ଡକେଇଲେ ଗୋଟେ ଭଲ ଦରଜି । ସେ ଲୁଗାକୁ ଦେଇ କହିଲେ ସୁନ୍ଦର ଜାମାଖଣ୍ଡେ ତିଆରି କରିବା ପାଇଁ । କିନ୍ତୁ ଏତେ ସୂକ୍ଷ୍ମ ସୂତାର କପଡ଼ାରେ ଜାମା ତିଆରି କରିବା ପାଇଁ କେହି ରାଜି ହେଲେନି । ତେଣୁ ରାଜକୁମାର ଡକେଇଲେ ସେ ବୁଢ଼ୀକୁ ।

ବୁଢ଼ୀକି କହିଲେ, "ଏତେ ସୁନ୍ଦର ଲୁଗା ଯଦି କରିପାରୁଛୁ, ଏବେ ଏଇ ଲୁଗାରେ ମୋ ପାଇଁ ହଳେ ଜାମା କରିଦେ।" ସେ କରିପାରିବ ନାହିଁ ବୋଲି କହିଲା। ମାତ୍ର ତା ନାତୁଣୀ ହୁଏତ କରି ଦେଇପାରେ ବୋଲି ଲୁଗାଖଣ୍ଡକ ଧରି ବୁଢ଼ୀ ଗଲା ଘରକୁ।

ଭାସିଲିସା ଦିନରାତି ଖଟି ଖଟି ଲୁଗାରୁ ହଳେ ଜାମା ସିଲେଇ କଲା। ଆହୁରି ଜାମାହଳକରେ ଖଞ୍ଜିଦେଲା ମୋତିମାଣିକ ଇତ୍ୟାଦି। କାମ ସରିଗଲା ପରେ ଜାମାହଳକ ଝଲସିଲା। ତାକୁ ଧରି ବୁଢ଼ୀ ଚାଲିଗଲା ଉଆସକୁ। ଜାମାହଳକ ଦେଖି ରାଜକୁମାର ମୁଗ୍ଧ ହୋଇଗଲେ। ଏମିତି ଜାମା ସିଲେଇ କରିବାକୁ ରାଜ୍ୟର ବଡ଼ ବଡ଼ ଦରଜି ହଟିଗଲେ; ଅଥଚ ବୁଢ଼ୀର



ନାତୁଣୀ ଏତେ ସୁନ୍ଦର ଭାବରେ ତିଆରି କରିଦେଲା ! ନିଶ୍ଚୟ ବୁଢ଼ୀର ନାତୁଣୀ ବୁଦ୍ଧିମତୀ ହୋଇଥିବ। ଏକଥା ଭାବି ରାଜକୁମାର ବୁଢ଼ୀକି କହିଲେ ନାତୁଣୀକି ଧରି ଆସିବା ପାଇଁ। ଖୁସିରେ ବୁଢ଼ୀ ଧାଇଁଗଲା ଘରକୁ। ସବୁ କଥା କହି ବୁଢ଼ୀ ଭାସିଲିସାକୁ ଧରି ସାଂଗେ ସାଂଗେ ଆସି ପହଞ୍ଚିଗଲା ଉଆସରେ। ରାଜକୁମାର ଭାସିଲିସାକୁ ଦେଖି ସ୍ତମ୍ଭୀଭୂତ ହୋଇଗଲେ। ଭାସିଲିସା ଡରିମରି ଠିଆ ହୋଇଥିଲା। ତଥାପି ତା' ସୌନ୍ଦର୍ଯ୍ୟରେ ରାଜକୁମାର ଏତେ ଆକର୍ଷିତ ହୋଇଗଲେ ଯେ ତାକୁ ବାହାହେବା ପାଇଁ କହିଲେ। ରାଜକୁମାରଙ୍କ କଥା ଶୁଣି ଭାସିଲିସା ଥରିବାକୁ ଆରମ୍ଭ କଲା। ଲାଲ୍ ପଡ଼ିଗଲା ତା ଗୋରା ମୁହଁଟା। ତଥାପି ସାହସ ବାନ୍ଧି ଗୋଟିଏ ସର୍ତ୍ତ ରଖି ରାଜକୁମାରଙ୍କୁ କହିଲା ଯେ ତା' ବାପା ଆଉ ବୁଢ଼ୀଆଇ ସଦାବେଳେ ତା' ପାଖରେ ରହିବେ। ରାଜକୁମାର ମଧ୍ୟ ଏ ସର୍ତ୍ତରେ ରାଜି ହୋଇଗଲେ।

ଶୁଭଦିନ ଦେଖି ରାଜକୁମାରଙ୍କର ଭାସିଲିସା ସହିତ ବେଶ୍ ଧୂମ୍‌ଧାମ୍‌ରେ ବିବାହ ହେଲା। ଭୋଜିଭାତରେ ଭାସିଲା ଉଆସ। ବୁଢ଼ାବାପା ତା' କାମରୁ ଫେରି ଖୋଜି ଖୋଜି ଆସି ପହଞ୍ଚିଲା ଉଆସରେ। ବୁଢ଼ୀ ବି ତା କୁଡ଼ିଆ ଛାଡ଼ି ଚାଲି ଆସିଲା ଉଆସକୁ। ଭାସିଲିସାର ଦୁଃଖର ଦିନ ଚାଲିଗଲା, ରହିଲା ସୁଖରେ। ସେଥିପାଇଁ କଥାରେ ଅଛି ଦୁଃଖ ପରେ ସୁଖ, ସୁଖ ପରେ ଦୁଃଖ। ମାତ୍ର ଦୁଃଖରେ ଭାଂଗିପଡ଼ିବ ନାହିଁ କି ସୁଖରେ ଆତ୍ମହରା ହେବନାହିଁ।

ଭାସିଲିସା ଯେତେ ସୁଖରେ ରହିଲେ ବି ତା କଣ୍ଢେଇକି କେବେହେଲେ ହାତଛଡ଼ା କରେନାହିଁ। ରାଜାଘର ସୁଖ ମିଳିଲେ ବି କଣ୍ଢେଇର ଉପକାରକୁ ସେ କେମିତି ଭୁଲିଯିବ!

*୬୨୮- ଲକ୍ଷ୍ମୀସାଗର, ଭୁବନେଶ୍ୱର*



# ପ୍ରଜାପତି

ଶ୍ରୀ ଗୋବିନ୍ଦ ଚନ୍ଦ୍ର ତ୍ରିପାଠୀ

ଦିନେ ସକାଳୁ ସକାଳୁ ବାପାଙ୍କ ସହିତ ବଗିଚା ଭିତରେ ବୁଲୁଥିଲା ଇନ୍ଦିରା। ଗାଲିଚା ପରି ପାଦ ତଳରେ ଥାଏ ଟିକି ଟିକି ଘାସ। ଘାସ ଉପରେ ପଡ଼ିଥାଏ କାକର। ଗଛମାନଙ୍କରେ ଜାତିଜାତିକା ଫୁଲ ଫୁଟି ହସୁଥାଏ। ଗଛ ଡାଳରେ ଥିବା ଫଳସବୁ ଧୀର ପବନରେ ଝୁଲୁଥାନ୍ତି। ସତେଯେମିତି ଦୋଳି ଖେଳୁଛନ୍ତି ସେମାନେ। ସୁନ୍ଦର ସୁନ୍ଦର ଟିକି ଟିକି ଡେଣା ମେଲି ଉଡୁଥାନ୍ତି ପ୍ରଜାପତି। ସତେଅବା 'ମୋତେ ଛୁଁ' ଖେଳରେ ମାତି ଯାଇଛନ୍ତି ସେମାନେ। ଟିକିଏ ଉଡି ଯାଉଥାନ୍ତି। କେତେବେଳେ ଫୁଲ ଉପରେ ବସି ପଡୁଥାନ୍ତି। ନିଜର ଟିକି ଟିକି ଶୁଣ୍ଢ ଲମ୍ବେଇ ଫୁଲରୁ ମହୁ ଟାଣି ନେଉଥାନ୍ତି, ପୁଣି ଉଡ଼ି ଯାଉଥାନ୍ତି ଅନ୍ୟ ଏକ ଫୁଲ ପାଖକୁ। ସତରେ କେଡ଼େ ସୁନ୍ଦର ଏଇ ପ୍ରଜାପତି ! ବେଳେ ବେଳେ ତାଙ୍କ ପରି ସୁନ୍ଦର ଭାବେ ସଜେଇ ହୋଇ ଉଡ଼ି ବୁଲିବାକୁ ଇଚ୍ଛା କରେ ଇନ୍ଦିରା।

ଗଛ ଡାଳରୁ ଗୀତ ଗାଉଥାନ୍ତି ଜଣାଅଜଣା କେତେ ଜାତିର୍ ଚଢ଼େଇ। ଗୋଟିଏ ଗଛରୁ ଆଉ ଗୋଟିଏ ଗଛକୁ ଲମ୍ବି ଯାଇଥାଏ ବୁଢ଼ିଆଣୀ ଜାଲ। ତା' ଉପରେ ଛକି ବସିଥାଏ ବୁଢ଼ିଆଣୀ। ଜାଲ ଉପରେ ପଡ଼ିଥାଏ କାକର ବିନ୍ଦୁ। ସକାଳର କଅଁଳ ଖରାରେ ମୁକ୍ତା ପରି ଚକ୍‌ଚକ୍ କରୁଥାଏ ସେସବୁ। ଏସବୁ ଦେଖୁ ଦେଖୁ ବିଭୋର ହୋଇଯାଉଥାଏ ଇନ୍ଦିରା। ତାକୁ ଖୁବ୍ ମଜା ଲାଗୁଥାଏ। ବେଳେବେଳେ ଆନମନା ହୋଇ ଯାଉଥାଏ ସେ।

ଏତିକିବେଳେ ଉଡୁ ଉଡୁ ବୁଢ଼ିଆଣୀ ଜାଲରେ ପଡ଼ିଗଲା ପ୍ରଜାପତିଟିଏ। ଜାଲରେ ଲାଖିଗଲା ତା' ଟିକିଡେଣା। ସେ ଆଉ ଉଡ଼ିପାରିଲା ନାହିଁ। ଜାଲରୁ ମୁକୁଳିବା ପାଇଁ ଛଟପଟ ହେଉଥାଏ ସେ। ପ୍ରଜାପତିଟି ଯେତିକି ଛଟପଟ ହେଉଥାଏ, ସେତିକି ସେତିକି ଜାଲରେ ଛନ୍ଦି ହୋଇଯାଉଥାଏ।

ପ୍ରଜାପତିଟିର ଏଇ ଅବସ୍ଥା ଦେଖି ଇନ୍ଦିରା ମନରେ ଦୁଃଖ ହେଲା। ବୁଢ଼ିଆଣୀ ଜାଲ ପାଖକୁ ଚାଲି-ଆସିଲା। ସେ ଦେଖିଲା ପ୍ରଜାପତିର ଦୁଃଖ ଦେଖି ଆନନ୍ଦରେ ନାଚି ଉଠୁଛି ବୁଢ଼ିଆଣୀ। ଧୀରେ ଧୀରେ ପ୍ରଜାପତି ପାଖକୁ ମାଡ଼ି ଆସୁଛି ସେ। ଏଇ ପ୍ରଜାପତି ପରି କୀଟପତଙ୍ଗ ସବୁ ତାର ଆହାର। ତାଙ୍କୁ ସହଜରେ ଧରିବା ପାଇଁ ଏମିତି ଜାଲ ବିଛେଇ ବସିଥାଏ ସେ। ଜାଲରେ ପଡ଼ିଥିବା ପତଙ୍ଗଙ୍କୁ ତା' ଦେହରୁ ବାହାରୁଥିବା ରେଶମୀ ସୂତାରେ ଶକ୍ତ ଭାବରେ ଗୁଡ଼େଇଦିଏ। ତା' ଦେହରେ ଆସ୍ତେ ଆସ୍ତେ ଛାଡ଼ିଦିଏ ଏକ ବିଷାକ୍ତ ରସାୟନ। ଏଇ ରସାୟନ ଯୋଗୁ ଜାଲରେ ପଡ଼ିଥିବା ଜୀବଟି ନିସ୍ତେଜ ହୋଇଯାଏ। ତା'ପରେ ତାକୁ ଆହାର କରିଥାଏ ବୁଢ଼ିଆଣୀ। ଏସବୁ ବାପା ଦିନେ କହୁଥିଲେ। ବାପା ଆହୁରି ମଧ୍ୟ କହୁଥିଲେ-- ଏଇ ବୁଢ଼ିଆଣୀ ଆମର ବନ୍ଧୁ। ଘରକୁ ଆସୁଥିବା ମଶାମାଛିଙ୍କୁ ଧରି ଖାଇଥାଏ ସେ। ବିଲରେ ଲାଗୁଥିବା ଅପକାରୀ କୀଟମାନଙ୍କୁ ଧରି ଖାଇଥାଏ। ହେଲେ ପ୍ରଜାପତିର ଏମିତି ଅବସ୍ଥା ଜମା ଦେଖିପାରିଲା ନାହିଁ ଇନ୍ଦିରା। ଇଏ କେମିତିକା ବନ୍ଧୁ ଯେ ଏଡ଼େ ସୁନ୍ଦର ପ୍ରଜାପତିକୁ ଧରି ଖାଇଯାଉଛି। କିଛି ଭାବି ପାରିଲା ନାହିଁ ସେ।

"ବାପା, ବାପା! ହଠାତ୍ ପାଟି କରି ଉଠିଲା ଇନ୍ଦିରା। ଧାଇଁଆସ ବାପା, ମୋ ପାଖକୁ ଟିକେ ଜଲଦି ଆସ।"

ବଗିଚାରେ ଟିକେ ଅନ୍ୟମନସ୍କ ଭାବେ ବୁଲୁଥିବା ବାପା ହଠାତ୍ ଚମକି ଉଠିଲେ। "ହଁ ହଁ ଯାଉଛି" କହି ଝିଅ ପାଖକୁ ଧାଇଁଆସିଲେ।

"କ'ଣ ହେଲା କିରେ ଝିଅ ? କାହିଁକି ଏତେ ପାଟି କରୁଛୁ?" ବାପା ପଚାରିଲେ।

"ବାପା! ଦେଖ ହେଇ ଦେଖ। ପ୍ରଜାପତିଟି ବୁଢ଼ିଆଣୀ ଜାଲରେ ପଡ଼ି ଛଟପଟ ହେଉଛି। ତାକୁ ଜାଲରୁ ମୁକୁଳେଇ ଦିଅ ବାପା! ନହେଲେ ବୁଢ଼ିଆଣୀ ଏଇନେ ଖାଇଯିବ।" କାନ୍ଦ କାନ୍ଦ ହୋଇ କହିଲା ଇନ୍ଦିରା।

"ଭଲ ହେବ ଖାଉ।" ବାପା କହିଲେ, "ଆମ ଲେମ୍ବୁ ଗଛର ବଡ଼ ଶତ୍ରୁଟିଏ ତ ଊଣା ହେବ।"

"ଖୁବ୍ ସୁନ୍ଦର ପ୍ରଜାପତିଟିଏ, ତାକୁ କାଢ଼ିଦିଅ ବାପା!" ଅନୁରୋଧ କଲା ପରି କହିଲା ଇନ୍ଦିରା। "ଆମ ଗୁରୁଜୀ କହୁଥିଲେ, ଏଇ ପ୍ରଜାପତି, ଭଅଁର ଆଉ ମହୁମାଛିମାନେ ଗଛର ବନ୍ଧୁ। ସେମାନଙ୍କ ପାଇଁ ଫୁଲରେ ପରାଗ ସଙ୍ଗମ ହୁଏ। ଫୁଲରୁ ହୁଏ ଫଳ। ଫଳରୁ ପୁଣି ଗଛ ହୁଏ। ପ୍ରଜାପତିକୁ ଯଦି ବୁଢ଼ିଆଣୀ ଖାଇଯିବ, ତେବେ ଫୁଲରୁ ଫଳ ହେବ କେମିତି ? ଫଳରୁ ଗଛ ହେବ କେମିତି ? ଗଛ ବିନା ଆମ ଏଇ ପୃଥିବୀ ମରୁଭୂମି ହୋଇଯିବନି ତ ?"

"ହଉ ହଉ ଆ।" ପୃଥିବୀକୁ ଆମେ ମରୁଭୂମି ହେବାକୁ ଦେବାନାହିଁ।" ହସି ହସି କହିଲେ ବାପା। "ଏଇନେ ଆମେ ପ୍ରଜାପତିଟିକୁ ଜାଲରୁ ମୁକ୍ତ କରିଦେବା। ସେ ମନ ଖୁସିରେ ଆମ ବଗିଚାରେ ଉଡ଼ିବୁଲିବ। ହେଲା ତ ?"

ପ୍ରଜାପତି ଡେଣା ଛାଟୁଥାଏ। ଆନନ୍ଦରେ ତା' ଜାଲ ଉପରେ ନାଚୁଥାଏ ବୁଢ଼ିଆଣୀ। ବାପା ଧୀରେ ଧୀରେ ବୁଢ଼ିଆଣୀର ଜାଲକୁ ଗୋଟିଏ ହାତରେ ଧରିନେଲେ। ଭୟରେ ସେଇଠୁ ଗଛ ଡାଳକୁ ଚାଲିଗଲା ବୁଢ଼ିଆଣୀ। ଆସ୍ତେ ଆସ୍ତେ ପ୍ରଜାପତିର ଡେଣାଦୁଇଟି ଧରି ଜାଲରୁ ଟାଣିନେଲେ ବାପା। ଯତ୍ନର ସହିତ ପ୍ରଜାପତି ଦେହରେ ଲାଖି ରହିଥିବା ବୁଢ଼ିଆଣୀ ଜାଲ ସବୁକୁ ସଫା କରିଦେଲେ। ତା'ପରେ ଇନ୍ଦିରାର ହାତରେ ପ୍ରଜାପତିଟିକୁ ଧୀରେ କରି ବସେଇଦେଲେ ସେ।

କିଛି ସମୟ ଚୁପ୍‌ଚାପ୍ ଇନ୍ଦିରାର ହାତରେ ବସି ରହିଲା ପ୍ରଜାପତି। ସତେଯେମିତି ଥକିଯାଇଥିଲା ସେ। ତା'ପରେ ଆନନ୍ଦ ମନରେ ଡେଣା ଝାଡ଼ି ବଗିଚା ଭିତରକୁ ଉଡ଼ିଗଲା । ତା' ବାଟକୁ କିଛି ସମୟ ପାଇଁ ଚାହିଁ ରହିଥିଲା ଇନ୍ଦିରା।

"ବାପା ! ତୁମେ କହୁଥିଲ ଏଇ ପ୍ରଜାପତି ଆମ ଲେମ୍ବୁ ଗଛର ଶତ୍ରୁ।" କିଛି ସମୟ ପରେ ବାପାଙ୍କ ମୁହଁକୁ ଚାହିଁ ପଚାରିଲା ଇନ୍ଦିରା। "ହେଲେ ମୁଁ ବୁଝିପାରିଲିନି ବାପା! ପ୍ରଜାପତି ତ ଡାଳପତ୍ର ଖାଏନାହିଁ। ଫୁଲରୁ ରସ ଖାଏ। ତେବେ ସେ ଗଛର ଶତ୍ରୁ ହେଲା କେମିତି?"

"ଆମ ଲେମ୍ବୁଗଛରେ ଲାଗୁଥିବା ଗୋଟିଏ ଚିତ୍ରିତ ପୋକ (Larva)କୁ ତୁ ତ ଦେଖିଛୁ?" ବାପା ପଚାରିଲେ।

"ହଁ ବାପା ଦେଖିଛି।" ଆଗ୍ରହର ସହିତ କହିଲା ଇନ୍ଦିରା।

"ସେ ଆମ ଲେମ୍ବୁଗଛର କଅଁଳ ଡାଳପତ୍ରକୁ ଖାଇଯାଏ। ଅଳ୍ପ ସମୟ ଭିତରେ ଥୁଣ୍ଟା ହୋଇଯାଏ-





ଗଛ ଆଉ ବଢ଼ିପାରେ ନାହିଁ । ହେଲେ ସେଇଥିପାଇଁ ଏଇ ପ୍ରଜାପତିର ଦୋଷ କ'ଣ ?"

"ହଁ, ତୁ ଠିକ୍ କହିଛୁ ଝିଅ।" ବାପା କହିଲେ-- "ପ୍ରଜାପତି କେବେହେଲେ ଡାଳପତ୍ର ଖାଏ ନାହିଁ। ତଥାପି ସବୁ ଦୋଷ ଏଇ ପ୍ରଜାପତିର। କାହିଁକି ନା, ସେଇ ପ୍ରଜାପତି ହେଉଛି ଏଇ ଚିତ୍ରିତ ଶୂକର ମାଆ। ଏହାକୁ ଲେମ୍ବୁ ପ୍ରଜାପତି(Lemon Butterfly) କୁହାଯାଏ। ଆମ ଦେଶରେ ଛଅଟି ପ୍ରଜାତିର ଲେମ୍ବୁ ପ୍ରଜାପତି ଦେଖାଯା'ନ୍ତି। ଏମାନେ କେହି ହେଲେ ସିଧାସଳଖ ଭାବେ ଗଛର କ୍ଷତି କରନ୍ତି ନାହିଁ। ପ୍ରତିଦିନ କିନ୍ତୁ ଉଡ଼ିବୁଲି ଲେମ୍ବୁଗଛର କଅଁଳପତ୍ର ଅଗରେ ଏମାନେ ଅଣ୍ଡା ଦେଇଥାନ୍ତି। ସେଇ ଅଣ୍ଡାରୁ ତିନିରୁ ଆଠ ଦିନ ମଧ୍ୟରେ ଛୋଟ ପୋକ ବା ଶୂକ ବାହାରେ। ଏଇ ଶୂକ ଗଛର କଅଁଳ ଡାଳପତ୍ରକୁ ଖାଇଯାଏ।"

"ଏଇ ଶୂକ ପୁଣି ପ୍ରଜାପତି ହୁଏ କେମିତି?" ଇନ୍ଦିରା ପଚାରିଲା।

ଇନ୍ଦିରାର ଆଗ୍ରହ ଦେଖି ବଗିଚାର ଲେମ୍ବୁଗଛ ପାଖକୁ ନେଇଗଲେ ବାପା। ତାକୁ ଗୋଟିଏ ଚିତ୍ରିତ ଶୂକ ଦେଖାଇ କହିଲେ-- "ଅଣ୍ଡାରୁ ଫୁଟି ବାହାରିବା ପରେ ଲେମ୍ବୁ-ପ୍ରଜାପତିର ଶୂକଟି ଲେମ୍ବୁଗଛର କଅଁଳ ଡାଳପତ୍ରକୁ ଖାଇବାକୁ ଲାଗେ। ଦିନରାତି ଖାଏ। ତା'ପରେ ସେ ଏଗାରରୁ ଚାଳିଶ ଦିନ ମଧ୍ୟରେ କୋଷା ବାନ୍ଧେ। କୋଷା ଅବସ୍ଥାରେ ସେ ଗଛର କିଛି ହେଲେ କ୍ଷତି କରେନାହିଁ। ସେମିତି ପଡ଼ି ରହିଥାଏ। କୋଷା ଭିତରେ ପ୍ରଜାପତିଟିଏ ଗଢ଼ି ହେଉଥାଏ। ଏମିତି ପନ୍ଦର ଦିନ ରହିଲା ପରେ କୋଷାର ଆବରଣ କାଟି ପଦାକୁ ବାହାରିଆସେ ପ୍ରଜାପତି। ବଡ଼ ସୁନ୍ଦର ପ୍ରଜାପତି। ଗ୍ରୀଷ୍ମଋତୁରେ ଅଠର ଦିନରେ ଆଉ ଶୀତ ଋତୁରେ ଏକଶହ ପଇଁଚାଳିଶ ଦିନରେ ଏହି ପ୍ରଜାପତିର ଜୀବନଚକ୍ର ସମ୍ପୂର୍ଣ୍ଣ ହୋଇଥାଏ।"

"ତା'ପରେ.... ?" ଇନ୍ଦିରା ପଚାରିଲା।

"ତା ପରେ ଆଉ କଣ?" ବାପା ହସି ହସି କହିଲେ। ତା'ପରେ ବଗିଚା ଭିତରେ ମନ ଖୁସିରେ ଉଡ଼ି ଉଡ଼ି ଚକ୍କର କାଟିଥାଏ ପ୍ରଜାପତି। ଫୁଲରୁ ଫୁଲକୁ ଉଡ଼ି ବୁଲେ। ମନ ଇଚ୍ଛା ମହୁ ଖାଏ। ଦିନସାରା ଏମିତି ଉଡ଼ି ବୁଲୁଥାଏ, ଆଉ ତୋ' ପରି ପିଲାମାନଙ୍କ ମନକୁ କିଣିନେଉଥାଏ। ଏବେ ବୁଝିଲୁ?"

ପ୍ରକୃତରେ ଈଶ୍ୱରଙ୍କର ଖୁବ୍ ସୁନ୍ଦର ସୃଷ୍ଟିଟିଏ ଏଇ ପ୍ରଜାପତି। ହେଲେ ଲେମ୍ବୁଗଛକୁ ବଞ୍ଚେଇବା ପାଇଁ ବେଳେବେଳ ଏମାନଙ୍କୁ ନଷ୍ଟ କରିବାକୁ ପଡ଼ିଥାଏ।" ବାପା ଦୀର୍ଘଶ୍ୱାସଟିଏ ଛାଡ଼ି କହିଲେ।

"ଏତେ କଥା ଅଛି ?" ଇନ୍ଦିରା କହିଲା।-- "କାହିଁ ମୁଁ କିଛି ହେଲେ ଜାଣି ନ ଥିଲି ?"

"ଭଲ ଭାବରେ ମନ ଲଗାଇ ପାଠ ପଢ଼। ବଡ଼ ହେଲେ ଆହୁରି ଅନେକ କଥା ଜାଣିବୁ।" ବାପା କହିଲେ। "ହଉ, ଚାଲ୍ ଚାଲ୍ ଘରକୁ ଯିବା।

*ଭାରତୀ କୁଟୀର, ଡୁଙ୍ଗୁରିପାଲି-୭୬୭୦୨୩, ସୁବର୍ଣ୍ଣପୁର*

# ଭାରି ମନେପଡ଼େ



ଶ୍ରୀ ପୀତାମ୍ବର ମିଶ୍ର

ଆମ ଗାଁ ମୁଣ୍ଡେ ନଈର ପଠା
ତା'ପାଖେ ଗହଳ ଆମ୍ବର ତୋଟା
ପୂରୁବ ନଭରେ ଉଇଁ ସୂରୁଯ
          ବୁଣିଦିଏ ନାଲି ରଙ୍ଗ ମୁରୁଜ
ପୂଜକ କଣ୍ଠରୁ ଶୁଭେ ଓଁକାର
          ସୁବାସ ଧୂପରେ ବାସେ ମନ୍ଦିର
ସକାଳେ ବାଜଇ ଆରତି ଘଣ୍ଟା
ଭାରି ମନେପଡ଼େ ମୋ ପିଲାଦିନର
          ମାଟି ସିଲଟର ମୁଣ୍ଡଳା କଟା ।୧।
କାନକୋଳି ଡାଳେ ଶୁଆଁଳ ଲଟା
          କୋଳି ତୋଳି ହାତେ ଭୁକିଛି କଣ୍ଟା
ଆମ ବିଦ୍ୟାଳୟ କେଡ଼େ ସୁନ୍ଦର
          ମୋ ପାଇଁ ଅଟଇ ପୂଜା ମନ୍ଦିର
ଗୁରୁଜୀ ଆକଟ 'କରନା ମଠ
          ବଡ଼ ଚାଟ ହେବୁ ପଢ଼ିଲେ ପାଠ
ଭଲ କାମେ ସଦା ମନକୁ ଖଟା'
          ଭାରି ମନେପଡ଼େ ......।୨।
ଆଷାଢ଼ ମାସର ବରଷା ଛିଟା
          ନାହିଁ ଆଜି ଡଗଡମାଳି ଛଟା
ଗୁରୁଜନଙ୍କର ଆଦେଶ ପାଳି
          ଚଳୁଥିଲେ ସର୍ବେ ନ ଥିଲା କଳି
ଫୁଲଫଳ ଭରା କ୍ଷେତ କିଆରି
          ଦେଖିଦେଲେ ଆଖି ଲାଖେ ସବୁରି
କେବେ କାହା ମନ ନ ଥିଲା ଫଟା ।
          ଭାରି ମନେପଡ଼େ ......।୩।
ପଥର ଶିଳର ଚାଉଳ ବଟା
          ଚକୁଳି ପିଠାରେ ଛେନା ଚକଟା
ବାର ମାସେ ତେର ପରବ ପାଳି
          ପାଳନ୍ତି ସରବେ ଶରଧା ଢାଳି
ଠାକୁରାଣୀ ଦାଣ୍ଡେ ଏକାଠି ବସି
          ଭୋଜିଭାତ ଖାଇ ହୁଏ ମୁଁ ଖୁସି
ନାଚ ଦେଖି ନାଚେ ହଲାଇ ଅଣ୍ଟା ।
          ଭାରି ମନେପଡ଼େ ......।୪।
ସମୟର ସୁଅ ଅଣଲେଉଟା
          ଜୁଆର ଶେଷରେ ଆସଇ ଭଟ୍ଟା
ମଠ ଘର ବରଗଛର ମୂଳେ
          ଖେଳୁଥିଲି ଦୋଳି ତାହାରି ଡାଳେ
ସାଥୀ, ସହପାଠୀ, ସଙ୍ଗାତ ମେଳେ
          ହଜଇ ନିଦାଘ ତା'ଛାଇ ତଳେ
ସେଇ ଗଛ ଆଜି ହୋଇଛି ଥୁଣ୍ଟା ।
          ଭାରି ମନେପଡ଼େ ......।୫।
ଜନନୀ ଜନମ ଭୂଇଁର ଭିଟା
          ବୋଳିଦେଲା ମନେ ମମତା ଅଠା
ତା'ର ଧୂଳି, ମାଟି, ଗୋଡ଼ି ସାଥିରେ
          ବିତାଇବି ଦିନ ନିତି ପ୍ରୀତିରେ
ଜଳିଥିଲା ଯହିଁ ଏନ୍ଦୁଡ଼ି ନିଆଁ
          ସେଇଠି ଲିଭିବ ମୋ ଚିତା ଧୂଆଁ
ସେହି ମୋର ସୃଷ୍ଟି ସେହି ମୋ ସ୍ରଷ୍ଟା ।
          ଭାରି ମନେପଡ଼େ ......।୬।

*ବାଗଦାବିନାୟକପୁର, ବାସୁଦେବପୁର, ଭଦ୍ରକ*

**




ଶ୍ରୀ ସୁରେଶ କୁମାର ପଣ୍ଡା

## ✪✪ ଈର୍ଷା

ଚୀନର ଗୋଟିଏ ସହରରେ ଦୁଇଜଣ ଲୋକ ମିଶି ଏକ ସହିତ ବ୍ୟବସାୟ ଆରମ୍ଭ କଲେ। ଉଭୟଙ୍କର ଦୋକାନ ପରସ୍ପର ଦୋକାନର ମୁହଁରେ ଥାଏ। ଦୁହିଁଙ୍କର ବ୍ୟବସାୟ ବହୁତ ଭଲ ଚାଲୁଥାଏ। କିଛିଦିନ ପରେ ଦୁଇଜଣଙ୍କର ଠାରେ ଏକ ଅଜଣା ବେମାର ହେଲା। କୌଣସି ପ୍ରକାର ଚିକିତ୍ସାରେ ମଧ୍ୟ ରୋଗ ଭଲ ହେଲାନାହିଁ। ସେମାନଙ୍କୁ ମୃତ୍ୟୁ ଅପେକ୍ଷାରେ ପଡ଼ିଥିବାର ଦେଖି ଜଣେ କେହି ପରାମର୍ଶ ଦେଲେ, ସେ ସମୟର ପ୍ରସିଦ୍ଧ ଦାର୍ଶନିକ କନ୍‌ଫୁସିୟସ୍‌ଙ୍କ ପରାମର୍ଶ ନେବାକୁ। କନ୍‌ଫୁସିୟସ ଉଭୟଙ୍କୁ ଅଲଗା ଅଲଗା ସମୟରେ ସାକ୍ଷାତ କରିବାକୁ ପରାମର୍ଶ ଦେଲେ। ଦୁହେଁ ଏକାନ୍ତରେ ସାକ୍ଷାତ କରି ନିଜ ନିଜର ମନୋବେଦନା କହିଲେ। ସାମନାରେ ଥିବା ଦୋକାନ ଦେଖି ଉଭୟେ ଈର୍ଷାରେ ଅନ୍ୟକୁ ସହ୍ୟ କରି ପାରୁ ନ ଥିଲେ।

ଏହି ପରସ୍ପର ପ୍ରତି ଈର୍ଷାଭାବ ଥିଲା ସେମାନଙ୍କର ରୋଗର କାରଣ।



କିଛି ସମୟ ଚିନ୍ତା କରି କନ୍‌ଫୁସିୟସ ଉପାୟ ବତାଇଦେଲେ। ସେମାନେ ଦୋକାନ ବଦଳେଇ ଦିଅନ୍ତୁ । ଜଣେ ଆର-ଜଣଙ୍କର ଦୋକାନରେ ନିଜକୁ ଗୁମାସ୍ତା ଓ ଆର ଜଣକୁ ନିଜର ମାଲିକ ମନେ କରି ବିକ୍ରି କରନ୍ତୁ। ଏହା ଫଳରେ ସବୁ ସମସ୍ୟାର ସମାଧାନ ହୋଇଯିବ।

ଦୋକାନୀ ଦୁହେଁ ତାଙ୍କ କଥା ଅନୁସାରେ କାମ କଲେ। ସତକୁସତ ଅଳ୍ପଦିନ ପରେ ଦୁହିଁଙ୍କର ରୋଗ ସମ୍ପୂର୍ଣ୍ଣ ଭାବରେ ଭଲ ହୋଇଗଲା।

## ✪✪ ଈଶ୍ୱର ନିର୍ଦ୍ଦୟ ନୁହଁନ୍ତି



'ଚ୍ୟାଙ୍ଗ କାଇସେକ୍'ଙ୍କ ସମୟର କଥା। ଜାପାନର ଭୟରେ ପ୍ରାୟ ସମସ୍ତ ଦେଶ ସେ ସମୟରେ ଅତ୍ୟନ୍ତ ଭୟଭୀତ ହୋଇ ରହି-ଥାଆନ୍ତି । ଚ୍ୟାଙ୍ଗ କାଇଙ୍କ ପତ୍ନୀ ତାଙ୍କ ମା'ଙ୍କ ଘରକୁ ଯାଇଥିଲେ। ଚ୍ୟାଙ୍ଗ କାଇଙ୍କ ଶାଶୂଙ୍କର ଈଶ୍ୱରଙ୍କ ପରେ ଗଭୀର ବିଶ୍ୱାସ ରହିଥାଏ। ସିଏ ଭାବୁଥିଲେ, ମନୁଷ୍ୟ ଯଦି ପୂର୍ଣ୍ଣ ପ୍ରାଣରେ ଈଶ୍ୱରଙ୍କ ପ୍ରତି ଭରସା ରଖେ, ସଙ୍କଟ ସମୟରେ ଭଗବାନ ନିଶ୍ଚୟ ତା'ର ଡାକ ଶୁଣନ୍ତି ।

ଦିନେ ଚ୍ୟାଙ୍ଗକାଇଙ୍କ ପତ୍ନୀ କହିଲେ- ମା। ଯଦି ଜାପାନ ସହ ଯୁଦ୍ଧ ହୁଏ, ତେବେ ଚୀନ୍ ସହିତ ଅନେକ ଦେଶ ଛାରଖାର ହୋଇଯିବ। ଆପଣ ଈଶ୍ୱରଙ୍କୁ ପ୍ରାର୍ଥନା କରି କୁହନ୍ତୁ-- ଭୂମିକମ୍ପ ହୋଇ ଜାପାନ୍ ସମ୍ପୂର୍ଣ୍ଣ ରୂପେ ଧ୍ୱଂସ ହୋଇଯାଉ।

ତାଙ୍କ କଥା ଶୁଣି ଚ୍ୟାଙ୍ଗକାଇଙ୍କ ଶାଶୂ କହିଲେ, "ଝିଅ ଯେ କୌଣସି ଦେଶର ଅଧିକାଂଶ ଲୋକ ଶାନ୍ତି ଚାହିଁଥାଆନ୍ତି। ଈଶ୍ୱର ଏତେ ନିଷ୍ଠୁର ନୁହନ୍ତି ଯେ ଜଣଙ୍କର

ପ୍ରାର୍ଥନାରେ ଅସଂଖ୍ୟ ଲୋକଙ୍କୁ ହତ୍ୟା କରିବେ। ତୁମେ ପ୍ରତ୍ୟେକ ଜାପାନୀର ଅନିଷ୍ଟ କାମନା କରି ନିଜ ଆତ୍ମାକୁ କଳୁଷିତ କରୁଛ କାହିଁକି ?"

ମାତାଙ୍କର କଥା ଶୁଣି ଚ୍ୟାଙ୍ଗକାଇଙ୍କ ପତ୍ନୀ ଲଜ୍ଜିତ ହେଲେ।

## ✪✪ ଉଦାରତା



'ସାର୍ ପ୍ରଭାଶଙ୍କର ପଟ୍ଟଣୀ' ଇଂଲଣ୍ଡର ରାଜରାସ୍ତାରେ ଯାଉଥାଆନ୍ତି। ତାଙ୍କର ଲମ୍ବାଦାଢ଼ି ଓ ଭାରତୀୟ ବେଶ ଦେଖି ଇଂରେଜ ପିଲାମାନଙ୍କୁ ବିଚିତ୍ର ଲାଗିଲା। ସେମାନେ ତାଙ୍କ ପଛେ ପଛେ ଗୋଡ଼ାଇ ଟେକା ଫୋପାଡ଼ିବାକୁ ଲାଗିଲେ।

ରାଗି ନ ଯାଇ ପଟ୍ଟଣୀ କହିଲେ- ବାଃ ପିଲାମାନେ ! ତୁମେମାନେ ତ ବହୁତ ଉତ୍ସାହୀ ଜଣାପଡୁଛ। ଆସ ମୁଁ ତୁମମାନଙ୍କୁ ପାଖ ଦୋକାନରେ ଜଳଖିଆ ଖୁଆଇବି।

ତାଙ୍କ ମୁହଁରୁ ବିଶୁଦ୍ଧ ଇଂରାଜୀ ଶୁଣି ପିଲାମାନେ ଆଶ୍ଚର୍ଯ୍ୟ ହୋଇଗଲେ। ଟେକା ଫୋପାଡ଼ିବା ବନ୍ଦ କରି ସେମାନେ ତାଙ୍କ ମୁହଁକୁ ଚାହିଁ ରହିଲେ। ପଟ୍ଟଣୀ ନିଜ ପକେଟ୍‌ରୁ ପଇସା ବାହାର କରି ସେମାନଙ୍କୁ ଜଳଖିଆ ଖୁଆଇବା ସହ ନିଜ ଦେଶ ବିଷୟରେ ଅନେକ ମଜା ମଜା କଥା ଶୁଣେଇଲେ।

ପଟ୍ଟଣୀଙ୍କ କଥା ଶୁଣି ପିଲାମାନେ ଲଜ୍ଜିତ ହୋଇ କ୍ଷମା ପ୍ରାର୍ଥନା କରି ବିଦାୟ ନେଲେ।

*ଗୁମୁଡ଼ା, ବି.ସିଂହପୁର, କୋରାପୁଟ- ୭୬୪୦୫୭*



## ବିଜ୍ଞାନ କୁଇଜ

ଶ୍ରୀ ଲକ୍ଷ୍ମଣ ମଲ୍ଲିକ

୧। କଙ୍ଗାରୁର ହୃତ୍‌ପିଣ୍ଡରେ କେତୋଟି କୋଠରୀ/କକ୍ଷ ଥାଏ ? (୨ଟି, ୪ଟି, ୬ଟି, ୮ଟି)

୨। ଏକ ଆଉନ୍‌ସ୍ କେତେ ଗ୍ରାମ୍ ? (୧୮.୩୫ ଗ୍ରାମ୍, ୨୮.୩୫ ଗ୍ରାମ୍, ୩୮.୩୫ ଗ୍ରାମ୍, ୪୮.୩୫ ଗ୍ରାମ୍)

୩। ବିଶ୍ୱ ପରିବେଶ ଦିବସ କେବେ ପାଳିତ ହୁଏ ? (ମାର୍ଚ୍ଚ ୫, ଜୁନ୍ ୫, ଜୁଲାଇ ୫, ଅଗଷ୍ଟ ୫)

୪। ଯବକାଚ ପ୍ରଥମେ କିଏ ପ୍ରସ୍ତୁତ କରିଥିଲେ ? (ହାନସ୍ ଲିମରସେ, ଗାଲିଲିଓ, ମାର୍କୋନୀ, ଥମାସ୍ ଏଡିସନ୍)

୫। କେଉଁ ଗଛ ସବୁଜ ଦେଖାଗଲେ ମଧ୍ୟ ପରଭୋଜୀ ? (ଲାଜକୁଳୀ, କୁଞ୍ଜଲତା, ନିର୍ମୂଳୀ)

୬। ମାନବର କେଉଁଠାରେ ଅଧିକ ଲୋହିତପେଶୀ ଥାଏ ? (ପେଟ, ହାତ, ପିଠି, ଗୋଡ଼)

୭। ଡାଇନାମୋର ଉଦ୍ଭାବକ କିଏ ? (ୱାଶିଂଟନ ୱାଟ୍, ଡେଭିସ୍, ନିଉଟନ୍, ମାଇକେଲ୍ ଫାରାଡ଼େ)

୮। ମାର୍ବଲ୍ କେଉଁଥିରୁ ପ୍ରସ୍ତୁତ ?(ପଥର, ଚୂନପଥର, ମାଙ୍କଡ଼ା ପଥର, ମୁଗୁନି ପଥର)

୯। ନୀଳ ତିମି ବିନା ଖାଦ୍ୟରେ କେତେ ଦିନ/କାଳ ବଞ୍ଚେ ? (୨ ମାସ, ୩ ମାସ, ୪ ମାସ, ୬ ମାସ)

୧୦। କେଉଁ ପକ୍ଷୀ ଭୂମି ଛୁଏଁନାହିଁ ? (ମାଛରଙ୍କା, ବାଦୁଡ଼ି, ବଣି, ଚାତକ)

*ଫକୀର ମୋହନ ସ୍ମୃତି ସଂସଦ, ଡିମିରି, ନୋଦା, କଟକ*

*(ଉତ୍ତର ୩୨ ପୃଷ୍ଠାରେ)*



(ନଡ଼ିଆ ଚାଷ ପାଇଁ କେରଳ ରାଜ୍ୟ ପ୍ରସିଦ୍ଧ। ପ୍ରତ୍ୟେକ ଦିନ ଅଜସ୍ର ନଡ଼ିଆ ଓ ପଇଡ଼ ରାଜ୍ୟ ବାହାରକୁ ରପ୍ତାନି ହୋଇଥାଏ । ପାର୍ଶ୍ୱଚିତ୍ରଟି ଏହାର ନମୁନା । ଗୋଟିଏ ଅଟୋରେ ଏତେ ନଡ଼ିଆ ଲଦାହୋଇଛି ଯେ ନଡ଼ିଆଗୁଡ଼ିକ ଚାଲୁଛନ୍ତି ନା ଅଟୋଟି ଚାଲୁଛି, ତାହା କହିବା କଷ୍ଟକର ।) ❖❖

# ଶକ୍ତିପ୍ରଦାୟକ ପଇଡ଼

ଶ୍ରୀ ସୁଦର୍ଶନ ମହାରଣା

ବାପା ଅପେକ୍ଷା କରିଥା'ନ୍ତି। ସେତେବେଳକୁ ଦିନ ୧୧ଟା ବାଜିଲାଣି। ଭୀଷଣ ଖରା। ସୋନୁ ପରୀକ୍ଷା ଦେଇ ଆସିଲା। ସୋନୁକୁ ବାପା ସାଇକେଲରେ ବସାଇଲେ। ସୋନୁ କହିଲା, ''ବାପା ! ଶୋଷ ହେଲାଣି। ଆଗ ଛକରେ ପଇଡ଼ ପିଇବା।''

ଛକ ପାଖରେ ପହଞ୍ଚିବା ବେଳକୁ ପଇଡ଼ ଦୋକାନରେ ଭିଡ଼। ଦୋକାନୀଜଣଙ୍କ ପଇଡ଼ କାଟି ପାଇପ ଲଗାଇ ଦେଉଛି। ବାପା ଦୋକାନୀକୁ ଦୁଇଟି ପଇଡ଼ ମାଗିଲେ। ଦୋକାନୀ ପଇଡ଼ କାଟି ସୋନୁ ହାତକୁ ଗୋଟିଏ ଓ ତା' ବାପାଙ୍କୁ ଗୋଟିଏ ଦେଲା। ବାପାପୁଅ ଦୁହେଁ ପଇଡ଼ ପାଣି ପିଇଲେ। ସୋନୁ ପଇଡ଼ ପିଇସାରି କହିଲା, "ପଇଡ଼ ବଡ଼ ମଧୁର।" ବାପା କହିଲେ, "ତୁ ବର୍ଣ୍ଣବୋଧରେ ପଢ଼ି ନ ଥିଲୁ-- ପଇଡ଼ ବଡ଼ ମଧୁର, ବିଲୁଆ ବଡ଼ ଚତୁର ।" ପଇଡ଼ ପାଣି ପିଇ ତା'ର ଶୋଷ ବନ୍ଦ ହେଲା।

ରାସ୍ତାରେ ଗଲାବେଳେ ତାକୁ କହିଲେ, ''ତୁ ଜାଣୁ ପଇଡ଼ ପାଣି ଏକ ପ୍ରାକୃତିକ ସାରାଂଶ। ଏହାକୁ ତୃଷା ନିବାରକ ଭାବେ ବ୍ୟବହାର କରାଯାଏ। ବଜାରରେ ମିଳୁଥିବା କୃତ୍ରିମ ପାନୀୟ ଜଳ ନ ପିଇ ପଇଡ଼ ପିଇଲେ ତାହା ଆମ ଦେହକୁ କାର୍ଯ୍ୟକ୍ଷମ କରିବା ସହିତ ଶକ୍ତିପ୍ରଦାନ କରିଥାଏ ଓ ଦେହରେ ସ୍ଫୂର୍ତ୍ତି ଆଣିଥାଏ। ଏପରି ପଇଡ଼ ଭିତରେ ଥିବା ନରମ ଶସ ଭଗବାନଙ୍କ ପ୍ରସାଦସଦୃଶ । ଏହାର ସ୍ୱାଦ ଐଶ୍ୱରିକ। ଏହା ଖଣିଜ ଦ୍ରବଣ ଓ ଭିଟାମିନ୍‌ରେ ଭରପୂର। ଏଣୁ ପଇଡ଼ ପାଣି ପିଇବା ଉଚିତ।

ପଇଡ଼ ପୁଷ୍ଟିସାର ଗୁଣଯୁକ୍ତ। ଏଥିରେ ମଧ୍ୟ ପଟାସିୟମ୍, ସୋଡିୟମ୍, କାଲସିୟମ୍, ମାଗ୍ନେସିୟମ୍, ଫସଫରସ୍, ଆଇରନ୍ ଓ କପର ଭଳି ଅତ୍ୟାବଶ୍ୟକ ଖଣିଜ ଦ୍ରବଣ ରହିଛି। ଏହା ପ୍ରାକୃତିକ ଶକ୍ତିବର୍ଦ୍ଧକରେ ସମୃଦ୍ଧ।

ପଇଡ଼ ପାଣି ପିଇବାର ଅଧିକ କାରଣ କ'ଣ ଜାଣୁ ? ପଇଡ଼ ପାଣିରେ ଔଷଧୀୟ ଗୁଣ ଭରପୂର। ଏଠାରେ ଆଉ କେତେକ କାରଣ ଅଛି, ଯେଉଁଥିପାଇ ଆମେ ଖାଦ୍ୟସୂଚୀରେ ନିୟମିତ ପଇଡ଼ ପାଣିକୁ ଅନ୍ତର୍ଭୁକ୍ତ କରିବା ଆବଶ୍ୟକ। ଏହା ଶରୀର ଚାହୁଁଥିବା ଭିଟାମିନ୍

ଓ ଖଣିଜରେ ଭରପୂର ଏକ ହେଲଥ୍ ଟନିକ୍। ଏହା ଏକ ତୁରନ୍ତ ସ୍ଫୂର୍ତ୍ତିଦାୟକ। ତୁ ଦେଖିଲୁ ପଇଡ଼ ପିଇସାରିଲା ପରେ କେତେ ସ୍ଫୂର୍ତ୍ତି ଲାଗିଲା !" ସୋନୁ କହିଲା, ହଁ।

ତା'ପରେ ବାପା କହିଲେ ଆହୁରି ଅନେକ ଗୁଣ ଅଛି। ସ୍ପୋର୍ଟସ୍ ଶକ୍ତି ପାନୀୟଠାରୁ ଏଥିରେ କମ୍ ସୋଡିୟମ୍ ଥିବାରୁ ଏହା ହୃଦ୍ ସମସ୍ୟା ଓ ନିର୍ଜଳଜନିତ ସମସ୍ୟାକୁ କମ୍ କରିଥାଏ। ଏହା ପ୍ରକ୍ରିୟାକରଣ ଶର୍କରା ପରିବର୍ତ୍ତେ ପ୍ରାକୃତିକ ଶର୍କରା ଓ ସ୍ୱାଦଯୁକ୍ତ ଅଟେ। ଦୁଗ୍ଧଠାରୁ କମ୍ ଚର୍ବି ଥାଏ ଓ କୋଲେଷ୍ଟରାଲ୍ ଆଦୌ ନ ଥାଏ ।

ବାପା କହିଲେ-- ନଡ଼ିଆ ହେଉଛି ପଇଡ଼ର ପାକଳ ଅବସ୍ଥା। ପଇଡ଼ରେ ଭିଟାମିନ୍ 'ସି' ଥାଏ। ଏହାକୁ ପିଇଲେ ପେଟ ଥଣ୍ଡା ହୁଏ ଓ ସ୍ମରଣଶକ୍ତି ବଢ଼େ। ହାକୁଟି ଆସିଲେ ଅଳ୍ପ ପରିମାଣରେ ପଇଡ଼ ପାଣି ପିଇ ପାଟିରେ ରଖିଲେ ହାକୁଟି ବନ୍ଦ ହୋଇଯାଏ। ସୋନୁ କହିଲା, "ନଡ଼ିଆରେ କିଛି ଔଷଧୀୟ ଗୁଣ ଅଛି ନା ?"

କଷି ନଡ଼ିଆର ରସକୁ ମୁହଁରେ ଲଗାଇଲେ ମୁହଁର ସୌନ୍ଦର୍ଯ୍ୟ ବୃଦ୍ଧି ପାଇବା ସହିତ ବ୍ରଣ ଆଦି ହୁଏନାହିଁ। ଝାଡ଼ା ହେଲେ ପଇଡ଼ ପାଣି ପିଇଲେ ଦେହକୁ ସତେଜ ରଖେ । ନାଳଝାଡ଼ା, ଅର୍ଶ, ହେପାଟାଇଟିସ୍, ଡାଇବେଟିସ୍ ଓ ହୃଦ୍‌ରୋଗରୁ ଉପଶମ ପାଇଁ ପଇଡ଼ ବ୍ୟବହାର କରାଯାଏ। ନଡ଼ିଆ ସବୁ ଶୁଭ କାମରେ ଲାଗେ ବୋଲି ଏହାକୁ 'ଶ୍ରୀଫଳ' କହନ୍ତି।

ଏଇ ନଡ଼ିଆ ଆମ ରାଜ୍ୟର ପୁରୀ, ବାଲେଶ୍ୱରରେ ଅଧିକ ହୁଏ। କେରଳ ରାଜ୍ୟରେ ମଧ୍ୟ ଅଧିକ ନଡ଼ିଆ ହୁଏ। ଆମେ ସମସ୍ତେ ନଡ଼ିଆ ଗଛ ସହିତ ପରିଚିତ। ଏହା ସାଧାରଣତଃ ଉଷ୍ମ ଜଳବାୟୁ, ସମୁଦ୍ରକୂଳିଆ ଅଞ୍ଚଳରେ ଭଲ ହୁଏ। ଏହାର ଉଚ୍ଚତା ପ୍ରାୟ ୬୦ଫୁଟରୁ ୧୦୦ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଗଛ ଗଣ୍ଡି ଗୋଲାକାର ଓ ଏହାର ଶାଖା ନାହିଁ। ପତ୍ର ବାହୁଙ୍ଗାରେ ଏହା ଝୁଲି ରହିଥାଏ। ପତ୍ର କଡ଼ରୁ ଫୁଲ କେନ୍ଦା ବାହାରେ ଓ ଛୋଟ କଷି ହୁଏ। ଆସ୍ତେ ଆସ୍ତେ କଷି ବଡ଼ ହୁଏ। ଏହାକୁ ପଇଡ଼ କୁହାଯାଏ। ପଇଡ଼ ପାକଳ ହେଲେ ନଡ଼ିଆ ହୁଏ। ତେଣୁ ନଡ଼ିଆ ଚାଷ ଏକ ଅର୍ଥକାରୀ ଫସଲ। ନଡ଼ିଆ ଗଛର ପ୍ରତ୍ୟେକ ଅଂଶ କାମରେ ଲାଗେ। ଖଡ଼ିକାରୁ ଝାଡୁ, କତାରୁ ଆସନ, ଦଉଡ଼ି, ଖେଳନା ତିଆରି ହୁଏ। ନଡ଼ିଆରୁ ତେଲ ଓ କୋରା ପ୍ରସ୍ତୁତ କରାଯାଏ। ପୋଡ଼ା ଘା'ରେ ନଡ଼ିଆ ତେଲ ମାରିଲେ ଘା' ଶୁଖିଯାଏ। କାଛୁକୁଣ୍ଡିଆ ହେଲେ ନଡ଼ିଆ ତେଲରେ ଗନ୍ଧକ ଓ କର୍ପୂର ପକାଇ ଲଗାଇଲେ ତାହା ଭଲ ହୋଇଯାଏ।

ଆହୁରି ଅଧିକ ଜାଣିବାକୁ ଚାହିଁଲେ, ଆମ ରାଜ୍ୟର ପୁରୀର ସାକ୍ଷୀଗୋପାଳଠାରେ 'ନଡ଼ିଆ ଗବେଷଣା କେନ୍ଦ୍ର' ସହିତ ଯୋଗାଯୋଗ କରାଯାଏ। ତେଣୁ ସ୍ୱାସ୍ଥ୍ୟ ପାଇଁ ନଡ଼ିଆ ହିଁ ସମ୍ପଦ।

*ନରହରିପୁର, ରେମୁଣା, ବାଲେଶ୍ୱର- ୭୫୬୦୧୯* ⁂



ବହି ଦେଖିବାରେ ପିଲାମାନଙ୍କର କି ଆଗ୍ରହ !

# ଶ୍ରେଷ୍ଠ ଭକ୍ତ

ଶ୍ରୀ ପ୍ରଶାନ୍ତ କୁମାର ଦାଶ

ପୁରାଣ ପୃଷ୍ଠାରୁ ଅନେକ ରାଜା ଓ ତାଙ୍କ ବୀରତ୍ୱର କାହାଣୀ ଶୁଣାଯାଏ। ମାତ୍ର ଆମେ ଏଠାରେ ଶୁଣିବା ଜଣେ ଭକ୍ତରାଜାଙ୍କର ଭକ୍ତିର କଥା। ମୟୂରଧ୍ୱଜ ନାମରେ ପୁରାକାଳରେ ଜଣେ ରାଜା ଥିଲେ। ସେଇ ରାଜା ଅତି ପରାକ୍ରମୀ, ପ୍ରଜାବତ୍ସଳ, ଦୟାଳୁ ଓ ଧାର୍ମିକ ଥିଲେ। ବେଦଜ୍ଞ ପଣ୍ଡିତ ମୟୂରଧ୍ୱଜ ସମସ୍ତଙ୍କୁ ବେଦମାର୍ଗରେ ପରିଚାଳିତ ହେବାକୁ ଦିଗ୍‌ଦର୍ଶନ ଦେଉଥିଲେ। ଥରେ ମଧ୍ୟମପାଣ୍ଡବ ଅର୍ଜୁନଙ୍କ ଦ୍ୱାରା ପ୍ରେରିତ ଯଜ୍ଞଅଶ୍ୱକୁ ରାଜା ମୟୂରଧ୍ୱଜ ଅଟକାଇ ରଖିଥିଲେ। ଅର୍ଜୁନ ମୟୂରଧ୍ୱଜଙ୍କ ଉପରେ ଅତିମାତ୍ରାରେ ରାଗିଯାଇଥିଲେ। ପ୍ରତିଶୋଧପରାୟଣ ହୋଇ ରାଜାଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲେ। ମୟୂରଧ୍ୱଜ କୃଷ୍ଣଙ୍କର ଶ୍ରେଷ୍ଠଭକ୍ତ ଥିଲେ। ତାଙ୍କର ଧର୍ମୀୟ ପ୍ରାଣର ମହତ୍ ପରିଚୟ ଲାଭ କରିଥିଲେ ଭଗବାନ। ତେଣୁ ମୟୂରଧ୍ୱଜ ରାଜାଙ୍କ ସହିତ ଯୁଦ୍ଧ କରିବାକୁ କୃଷ୍ଣ ଅର୍ଜୁନଙ୍କୁ ବାରଣ କଲେ। ସେ ଇଚ୍ଛା କରୁଥିଲେ ଅର୍ଜୁନ ସ୍ୱଚକ୍ଷୁରେ ମୟୂରଧ୍ୱଜଙ୍କର ଭକ୍ତି ଓ ତ୍ୟାଗ ପରାକାଷ୍ଠାକୁ ଦର୍ଶନ କରନ୍ତୁ।

ଦିନେ କୃଷ୍ଣ ଅର୍ଜୁନଙ୍କୁ ସାଙ୍ଗରେ ନେଇ ବ୍ରାହ୍ମଣ ବେଶ ଧାରଣ କରି ମୟୂରଧ୍ୱଜଙ୍କ ନିକଟକୁ ଗଲେ। ରାଜାଙ୍କ ଅତିଥି ହୋଇ ଦୁହେଁ ରାଜପୁରରେ ପ୍ରବେଶ କଲେ। ଦୁଇଜଣ ବ୍ରାହ୍ମଣଙ୍କୁ ଦର୍ଶନ କରି ରାଜା ଖୁସିରେ ପ୍ରଣାମ ଜଣାଇଲେ ଓ ପାଦଧୌତ କରି ଅତିଥି ଦୁଇଜଣଙ୍କୁ ପାଛୋଟି ନେଲେ ରାଜପୁରକୁ। ଦୁହିଁଙ୍କ ପାଇଁ ସ୍ୱାଦିଷ୍ଟ ପାନୀୟ ପ୍ରଦାନ କଲେ ଓ ପରେ ଭୋଜନର ବ୍ୟବସ୍ଥା କରାଗଲା। ଅନ୍ନବ୍ୟଞ୍ଜନ ମିଶ୍ରିତ ଖାଦ୍ୟରୁ କିଛି ଭୋଜନ କରିବାକୁ ଉଦ୍ୟତ ହେଲାବେଳେ ଛଦ୍ମବେଶୀ ଶ୍ରୀକୃଷ୍ଣ ଭକ୍ତିର ପରୀକ୍ଷା ନିମନ୍ତେ ରାଜା ମୟୂରଧ୍ୱଜଙ୍କୁ ଏକ ମନଗଢ଼ା କାହାଣୀ ଶୁଣାଇ କହିଲେ, "ହେ ରାଜା! ଆପଣ ଦୟାଧର୍ମର ଅବତାର। ଆମେ ଅତି ଦୁଃଖ ଓ ବିପଦରେ ପଡ଼ିଯାଇଛୁ। ଆମର ଦୁଃଖ ଟିକେ ବୁଝନ୍ତୁ ଓ ଆମ ପ୍ରତି ଦୟା କରନ୍ତୁ। ଆପଣଙ୍କ ରାଜ୍ୟକୁ ଆସିବା ବାଟରେ ଏକ ଅରଣ୍ୟ ପଡ଼ିଲା। ସେଇ ଅରଣ୍ୟ ମଧ୍ୟରେ ଆସୁ ଆସୁ ମୋର ଏଇ ବନ୍ଧୁଙ୍କର ଶିଶୁପୁତ୍ରକୁ ମହାବଳ ବାଘ ଝାମ୍ପିନେଇ ପଳାଇ ଯାଉଥିଲା। ଆମେ ଦୁହେଁ ଦଉଡ଼ିଯାଇ ତା' ନିକଟରେ ପହଞ୍ଚିଲାବେଳକୁ ସେ ସେଇ ଶିଶୁଟିର ଦେହରେ ଅର୍ଦ୍ଧେକ ଭକ୍ଷଣ କରିଦେଇ-ଥିଲା; କିନ୍ତୁ ଆମର ବିକଳ ନିବେଦନ ଶୁଣି ତାର ମନରେ ଦୟା ଆସିଲା। ସେ ପୂର୍ବବତ୍ ଶିଶୁଟିକୁ ସଜୀବ କରି



ଫେରାଇ ଦେବାକୁ ଏକ ସର୍ତ୍ତ ରଖିଲା । ଯଦି ଏ ରାଜ୍ୟର ରାଜା ମୟୂରଧ୍ୱଜ ତାଙ୍କ ଦେହର ଅର୍ଦ୍ଧକେ ଭାଗ ଦାନ ଦେବେ, ତେବେ ଆମେ ନେଇ ତାକୁ ପ୍ରଦାନ କରିବୁ, ତେବେ ଶିଶୁଟି ତାର ପୁନର୍ଜୀବନ ଲାଭ କରିପାରିବ। ଆପଣ ସତ୍ୟ କରନ୍ତୁ, ଆପଣ ନିଜ ଦେହର ଅର୍ଦ୍ଧେକ ଭାଗ ପ୍ରଦାନ କଲେ ଆମେ ତାହା ବାଘକୁ ଦେଇ ଶିଶୁଟିକୁ ଜୀବିତ ଅବସ୍ଥାରେ ଫେରିପାଇବୁ । ପୁତ୍ରଶୋକରେ ମର୍ମାହତ ହୋଇଥିବା ମୋର ଏଇ ବନ୍ଧୁଜଣଙ୍କ ଆପଣଙ୍କ ଦ୍ୱାରା ପ୍ରଦତ୍ତ ଆତିଥେୟ ତଥା ଭୋଜନକୁ କେବେ ଗ୍ରହଣ କରିବେ ନାହିଁ ।''

ରାଜା ମୟୂରଧ୍ୱଜ ଅତି କର୍ତ୍ତବ୍ୟପରାୟଣ ଥିଲେ । ସେ ବ୍ରାହ୍ମଣଙ୍କ କଥା ଶୁଣି ଏଥିରେ ସମ୍ମତି ପ୍ରଦାନ କଲେ ଏବଂ ଆଦେଶ ପାଇ ରାଣୀ ଓ ତାଙ୍କର ପୁତ୍ରମାନେ ଏକ ଧାରୁଆ କରତ ସାହାଯ୍ୟରେ ରାଜାଙ୍କର ଅଙ୍ଗର ଦକ୍ଷିଣ ଭାଗକୁ କାଟିବାକୁ ଆରମ୍ଭ କଲେ । ନିଜର ଦେହର ଡାହାଣ ଭାଗ କଟା ଚାଲିଥାଏ । ରାଜାଙ୍କ ବାମ ନୟନରୁ ଧାର ଧାର ଲୁହ ଝରି ପଡୁଥାଏ । ଏହା ଦେଖି ଛଦ୍ମବେଶୀ ବ୍ରାହ୍ମଣ କହିଲେ, ''ମହାରାଜ, ଆପଣଙ୍କ ଆଖିରୁ ଲୁହ ଗଡୁଥିବାର ଦେଖି ମନେହେଉଛି, ଯେପରି ଆପଣ କୁଣ୍ଠାବୋଧ ହୋଇ ଆପଣଙ୍କ ଶରୀର ଦାନ କରୁଛନ୍ତି । ତେଣୁ କ୍ଷମା କରିବେ ଦୁଃଖ ଓ ଅନିଚ୍ଛାକୃତ ଦାନ ଗ୍ରହଣ କରିବା ଆଦୌ ଧର୍ମସମ୍ମତ ନୁହେଁ ।''

ବ୍ରାହ୍ମଣଙ୍କର କଥା ଶୁଣି ରାଜା ଉତ୍ତରଦେଲେ-- ''ହେ ମହାତ୍ମା ! ମୋର ଯଦି ଇଚ୍ଛା ନ ଥା'ନ୍ତା, ତେବେ ମୋର ଦୁଇ ଆଖିରୁ ଲୁହ ଝରିଥାନ୍ତା । କିନ୍ତୁ ବାମ ଆଖିରୁ କେବଳ ଲୁହ ଝରିବାର କାରଣ-- ମୋର ଦେହର ଦକ୍ଷିଣ ଫାଳଟି ଦାନରେ ବ୍ୟବହୃତ ହେବ ଏବଂ ସତ୍‌କର୍ମରେ ବିନିଯୋଗ ହେବା ଫଳରେ ଏକ ଶିଶୁ ମୁକ୍ତି ପାଇବ। ମାତ୍ର ବାମଅଙ୍ଗଟି ଅକାମୀ ହୋଇ ବିଲୁଆ ଓ ଶାଗୁଣାଙ୍କ ମୁଖରେ ଭୋଜ୍ୟ ପାଇଁ ଉଦ୍ଦିଷ୍ଟ ହେବ । ସେଇ ଚିନ୍ତାରେ ବାମ ଆଖିରୁ ମୋର ଲୁହ ଗଡ଼ି ପଡୁଛି ।'' ଏଥର କୃଷ୍ଣ ରାଜାଙ୍କ କର୍ତ୍ତବ୍ୟପରାୟଣତା ଓ ନିଷ୍ଠାରେ ଖୁସି ହୋଇଗଲେ ଓ ଛଦ୍ମରୂପକୁ ବର୍ଜନ କରି ଭଗବାନ ନିଜର ଦିବ୍ୟରୂପକୁ ଧାରଣ କଲେ । ମୟୂରଧ୍ୱଜ କୃଷ୍ଣଙ୍କ ସ୍ୱରୂପ ଦର୍ଶନ କରି ଖୁସି ହେଲେ । ରାଜାଙ୍କ ଉପରେ ଅତ୍ୟନ୍ତ ଖୁସି ହୋଇ ଭଗବାନ ଶ୍ରୀକୃଷ୍ଣ ଦୀର୍ଘାୟୁ ହେବାକୁ ଆଶୀର୍ବାଦ ଦେଲେ ।

ଏସବୁ ଦେଖି ଅର୍ଜୁନ ବିସ୍ମିତ ହେଲେ । ତାଙ୍କ ମନରେ ଥିବା ସବୁ ଗର୍ବ ଓ ଅହଙ୍କାର ଚୂର୍ଣ୍ଣ ହେଲା । ଅର୍ଜୁନ ଏଥର ବୁଝିପାରିଲେ ଯେ ଭଗବାନ୍ ଶ୍ରୀକୃଷ୍ଣଙ୍କର ଶ୍ରେଷ୍ଠଭକ୍ତ ଅଛନ୍ତି, ଯେଉଁମାନେ ଭକ୍ତି ଭାବରେ ଭଗବାନ୍‌ଙ୍କୁ ସନ୍ତୁଷ୍ଟ କରି ଏପରି ଅସାଧ୍ୟ ସାଧନ କରିପାରନ୍ତି ।

*ସ୍ନେହସୁଧା ଭବନ, କୁଞ୍ଜର, ସଙ୍ଗଳାଇ, ପିପିଲି, ପୁରୀ- ୭୫୨୧୦୪*

**

ଜଣେ ମୋଟାଲୋକ ଓ ଛୋଟପିଲାଟିଏ ସାଙ୍ଗ ହୋଇ ଆସୁଥାଆନ୍ତି । ବାଟରେ ଗୋଟିଏ ପୋଲ ନିକଟରେ ପହଞ୍ଚି ପିଲାଟି ହଠାତ୍ ଅଟକିଗଲା । ତାହା ଦେଖି ମୋଟାଲୋକ କହିଲେ, ''ପୁଅ ! ତୋତେ କ'ଣ ନଦୀ ଉପରେ ଯିବାକୁ ଭୟ ଲାଗୁଛି ?''

ପିଲାଟି କହିଲା, 'ନାଇଁ ମଉସା ! ଏଇ ସାମ୍ନା ବୋର୍ଡ୍‌କୁ ଚାହାଁନ୍ତୁ ।''

ଭଦ୍ରବ୍ୟକ୍ତି ବୋର୍ଡ୍‌କୁ ଚାହିଁ ଦେଖିଲେ । ସେଥିରେ ଲେଖାଥିଲା-- 'ଭାରୀ ଯାନକୁ ପ୍ରଥମେ ଯିବାକୁ ଦିଅନ୍ତୁ ।'

# ପାଣି

ଶ୍ରୀ ଲକ୍ଷ୍ମୀଚରଣ ସାମନ୍ତରାୟ୍

ଖରା ତାତିରେ ଖେଳିଖେଳିକା
ଆକାଶେ ଯାଏ ଫେରି
ବରଷା ଦିନେ ଝୁଲିଝୁଲିକା
ପଡ଼ଇ ପୁଣି ଝରି ।
ଖେଳେଇ ହୋଇ ଜଗତସାରା
ସବୁଠି ଥାଏ ମୁହିଁ
ମାଟି ଖୋଳିଲେ ପାଇବ ମତେ
ପିଲାଏ ଦିଅ କହି ।
ଜଗତସାରା ବୁଲୁଛି ନିତି
କରୁଛି କେତେ ସେବା
ସବୁରି ପାଖେ ମୋର ଆଦର
ନ ଜାଣେ ମୋତେ କେ ବା !
ଯେଉଁ ସ୍ଥାନରେ ନ ଥାଏ ମୁହିଁ
ହୁଏ ସେ ମରୁବାଲି
ନ ଥା'ନ୍ତି ପ୍ରାଣୀ ଗଛ ପତର
ଲାଗେ ସେ ଖାଲି ଖାଲି ।



ଜୀବନ ପାଇଁ ଦରବ ଯେତେ
ରଖିଛି କରି ଠୁଳ
ପିଇଲେ ମୋତେ ମିଳଇ ଶକ୍ତି
ସବୁଠି ମୋର ମୂଳ ।
ପାରୁଛ ଯେବେ ସାଇତି ରଖ
ଦିନେ ମୁଁ ହେବି ସାହା
ଦୁନିଆଁ ଜାଣେ ମୋର ନାମଟି
ସବୁଠି ଦିଏ ରାହା ।

*ଖାଜାସାହି, ବ୍ରହ୍ମପୁର- ୭୬୦୦୦୧*

**

---

## ଆଜିକାଲି ଯୁଗର ମୋବାଇଲ୍-ଯାତ୍ରା




ଚୀନ୍‌ଦେଶର ଏକ ସହରର ଫୁଟ୍‌ପାଥ୍‌ରେ ବ୍ୟବସାୟୀମାନେ ପୁରୁଣା ମୋବାଇଲ୍ ଫୋନ୍‌ର ପସରା ମେଲାଇ ବସିଛନ୍ତି ।



# ଦୂର ଆକାଶର ଦୀପ

ଶ୍ରୀ ନିକୁଞ୍ଜ ବିହାରୀ ସାହୁ

ଏବେ ସନ୍ଧ୍ୟା ଆକାଶର ପଶ୍ଚିମ ପଟେ ଏକ ତାରା ତୋଫା ଆଲୁଅ ଦେଇ ଚିକ୍‌ମିକ୍ କରୁଥିବାର ଦେଖାଯାଉଛି । ନିଜର ଅଦ୍ୱିତୀୟ ତେଜ ପାଇଁ ଏହା ଅନ୍ୟ ତାରାଠାରୁ ସ୍ୱତଃ ବାରି ହୋଇପଡୁଛି ଓ ଆକାଶରେ ଅଳ୍ପକ୍ଷଣ ରହି ଅସ୍ତ ଯାଉଛି । ଏହାକୁ ଆମେ ସାଧାରଣତଃ 'ସନ୍ଧ୍ୟାତାରା' ବୋଲି କହିଥାଉ । କବିବର ରାଧାନାଥ ରାୟ ନିଜର 'କାଳିଜାଇରେ ସନ୍ଧ୍ୟା' କବିତାରେ ଏହି ତାରାକୁ ଝଟକୁଥିବା ଖଣ୍ଡିଏ ହୀରା ସହିତ ତୁଳନା କରିଛନ୍ତି । ଦୂରବୀକ୍ଷଣରେ ଚାହିଁଲେ ଏହା ଚନ୍ଦ୍ର ଭଳି ଆକାରର ଛୋଟବଡ଼ ହୋଇ 'କଳା' ପ୍ରଦର୍ଶନ କରୁଥିବାର ଦେଖାଯାଉଛି ।

ଏହିଭଳି ଅନ୍ୟ ଏକ ତାରା କେବେ କେମିତି ଭୋର ଆକାଶରେ ପୂର୍ବ ପଟେ ମୁହଁ ଦେଖାଏ । ଏହା 'କୁଆଁତାରା' ନାମରେ ପରିଚିତ । ଏହାକୁ ଦେଖି ଲୋକେ ରାତି ପାହିଲା ବୋଲି ଜାଣିଥା'ନ୍ତି । ପାହାନ୍ତା ପ୍ରହରରେ ଦେଖାଯାଉଥିବାରୁ ଏହା ମଧ୍ୟ ଆମ ଗାଁ'ଗହଳରେ 'ଫୁକିଆ ତାରା' ନାମରେ ପରିଚିତ । ଶୀତଦିନେ ଭୋର୍‌ରୁ କୃଷକ ଆକାଶରେ ଏହି ତାରାକୁ ଦେଖି ବେଙ୍ଗଳା ପାଇଁ ପ୍ରସ୍ତୁତ ହେଉଥିବାରୁ କେହି କେହି ଏହାକୁ 'ବେଙ୍ଗଳା ତାରା' ବୋଲି କହିଥାନ୍ତି । ଏହି ତାରା ଭୋର ଆକାଶରେ ମଧ୍ୟ ଅତି ସ୍ୱଳ୍ପ ସମୟ ପାଇଁ ଦୃଶ୍ୟ ହୋଇଥାଏ । ପ୍ରକୃତିକବି ଗଙ୍ଗାଧର ମେହେର 'ଆଶ୍ରମେ ପ୍ରଭାତ' କବିତାରେ ବନବାସିନୀ ସୀତାଙ୍କ ଆଶ୍ରମ ଅଗଣାରେ କୁଆଁତାରା କିପରି ନିଜର ରୂପେଲି ଆଲୁଅ ବିଞ୍ଚି ପ୍ରଭାତ ଆଗମନୀ ସୂଚନା ଦିଏ, ବର୍ଣ୍ଣନା କରିଛନ୍ତି ।

ସୁତରାଂ ନିଜର ତୋଫା ଆଲୁଅ, ବୃହତ୍ ଆକାରର ତଥା ଅପରୂପ ଔଜ୍ଜ୍ୱଲ୍ୟ ପାଇଁ ଏ ଦୁଇଟି ତାରା ଆମ ଜନଜୀବନରେ ବେଶ୍ ସୁପରିଚିତ । ମାତ୍ର ଏ ଦୁଇଟି କିନ୍ତୁ ଅଲଗା ତାରା ନୁହନ୍ତି ; ବରଂ ଏକ ଓ ଅଭିନ୍ନ । ଏହା କେତେବେଳେ ସନ୍ଧ୍ୟାରେ ତ ଆଉ କେବେ ଭୋର୍‌ରୁ ଆକାଶରେ ମୁହଁ ଦେଖାଏ । ଏହା ପୁଣି ତାରା ନୁହେଁ, ଗ୍ରହ 'ଶୁକ୍ର', ଯାହା ସୌର ପରିବାରର ନଅଟି ଗ୍ରହ ମଧ୍ୟରୁ ଅନ୍ୟତମ ।

ଶୁକ୍ର ଆମର ନିକଟତମ ଗ୍ରହ । ତେଣୁ ଏହା ଖାଲି ଆଖିକୁ ବଡ଼ ଦେଖାଯିବା ସ୍ୱାଭାବିକ । ଏହାର ବାୟୁମଣ୍ଡଳରେ ଅଙ୍ଗାରକାମ୍ଳ ଗ୍ୟାସ୍‌ର ଘନ ଆସ୍ତରଣ ରହିଛି । ଏହା ସୂର୍ଯ୍ୟାଲୋକକୁ ବେଶ୍ ପ୍ରତିଫଳିତ କରୁଥିବାରୁ ଗ୍ରହଟିରେ ସ୍ୱଭାବସୁଲଭ ଔଜ୍ଜ୍ୱଲ୍ୟ ସୃଷ୍ଟି ହୋଇଥାଏ ।

ବୁଧ ପରେ ଶୁକ୍ର ସୂର୍ଯ୍ୟର ନିକଟତମ ଗ୍ରହ । କୁନିପିଲାଟିଏ ସର୍ବଦା ମା'ର କାନି ଧରି ଯାଉଥିଲା ପରି ଶୁକ୍ର ସବୁବେଳେ ସୂର୍ଯ୍ୟର ପାଖେ ପାଖେ ରହିଥାଏ । ସୂର୍ଯ୍ୟ ସହିତ ଏହା ଆକାଶକୁ ଆସେ ଓ ଏକା ସାଙ୍ଗରେ



ମଧ୍ୟ ଆକାଶରୁ ବିଦାୟ ନିଏ । ଫଳରେ ଏହା କେବଳ ସୂର୍ଯ୍ୟୋଦୟ ପୂର୍ବରୁ ଭୋର ସମୟରେ କିମ୍ବା ସୂର୍ଯ୍ୟାସ୍ତ ପରେ ସନ୍ଧ୍ୟା କାଳରେ ସ୍ୱଳ୍ପ ସମୟ ପାଇଁ ଦୃଶ୍ୟ ହୁଏ । ଆଉ ସେତେବେଳେ ହିଁ ଏହା ଜନମାନସରେ 'କୁଆଁତାରା' କିମ୍ବା 'ସନ୍ଧ୍ୟାତାରା' ନାମରେ ପରିଚିତ ହୋଇଥାଏ । ଏହାକୁ କଦାପି ମଧ୍ୟରାତ୍ରୀରେ ଆକାଶରେ ଦେଖି ହୁଏନାହିଁ ।

ଶୁକ୍ରକୁ ଦୂରବୀକ୍ଷଣରେ ଲକ୍ଷ୍ୟ କଲେ ଅବିକଳ ବଙ୍କୁଲି ଜହ୍ନ ସଦୃଶ ଦେଖାଯାଏ । ଜହ୍ନ ଭଳି ଏହାର ଆକାର ମଧ୍ୟ ଛୋଟବଡ଼ ହେଉଥିବାର ଦେଖିବାକୁ ମିଳେ । କେତେବେଳେ ଏହାର ଦାଆ ଭଳି ଧାରେ ଗାର ତ ଆଉ କେବେ କିମ୍ବା ପିଠା ଭଳି ସମ୍ପୂର୍ଣ୍ଣ ଗୋଲ ଜଣାପଡ଼େ । ଖାଲି ଆଖିକୁ ଏହି ପରିବର୍ତ୍ତନଶୀଳ ଆକାର ଜଣା ପଡୁ ନଥିଲେ ସୁଦ୍ଧା ନିରେଖି ଦେଖିଲେ ଏହା ପୂରା ଗୋଲ ରୂପ ପରିବର୍ତ୍ତେ ଲମ୍ବାଳିଆ କିମ୍ବା ଅନିମିୟତକାର ହେଉଥିବାର ସହଜରେ ବାରି ହୋଇପଡ଼େ ।

ଶୁକ୍ରର ମନମତାଣିଆ ଆଲୋକ ସତ୍ତ୍ୱେ ଗ୍ରହଟି କିନ୍ତୁ ବାସ୍ତବରେ ରୁକ୍ଷ । ଏହା ଆମ ସୌରଜଗତର ସବୁଠାରୁ ଉତ୍ତପ୍ତ ଗ୍ରହ । ଏହାର ଘନ ଅଙ୍ଗାରକାମ୍ଳ ଆସ୍ତରଣ ସୂର୍ଯ୍ୟତାପକୁ ଶୋଷି ନେଇ ପଦାକୁ ଛାଡ଼େନାହିଁ । ଫଳରେ ଏହାର ତାପମାତ୍ରା ଫୁଟନ୍ତା ପାଣିର ତାତିଠାରୁ ପ୍ରାୟ ଚାରିଗୁଣ ବେଶୀ, ଯାହା ନିକଟତମ ଗ୍ରହ ବୁଧଠାରୁ ମଧ୍ୟ ଅଧିକ । ଏହାର ବହଳ ଅଙ୍ଗାରକାମ୍ଳ ବାଷ୍ପଭରା ବାୟୁମଣ୍ଡଳ ମଧ୍ୟ ଶ୍ୱାସ ଉପଯୋଗୀ ନୁହେଁ । ଏହି ଗ୍ରହର ଉର୍ଦ୍ଧ୍ୱ ବାୟୁମଣ୍ଡଳ ମଧ୍ୟ ବିଷାକ୍ତ ସାଇଫୁର୍ଗିକ୍ ଅମ୍ଳର ବାଷ୍ପରେ ଭରା । ଏହାର ନିର୍ମେଘ ଆକାଶକୁ ଘଡ଼ଘଡ଼ି ସଦାସର୍ବଦା ପ୍ରକମ୍ପିତ କରେ ଏବଂ ବିଜୁଳି ଘନଘନ ଚମକି ଉଠେ । ଅଥଚ ଗ୍ରହଟିର ଉତ୍ତପ୍ତ ଓ ଶ୍ୱାସରୁଦ୍ଧକାରୀ ବାୟୁମଣ୍ଡଳର ନିମ୍ନଭାଗରେ ଶୁଷ୍କମାନ ଉପତ୍ୟକା ସବୁ ଦେଖିବାକୁ ମିଳେ, ବୋଧହୁଏ ଏହା କେଉଁ ଆଦିମ ଯୁଗର ସାଗର ମହାସାଗରର ଧ୍ୱଂସା-ବଶେଷ । ଅତ୍ୟଧିକ ତାପମାତ୍ରା ହେତୁ ଗ୍ରହଟିରେ କୌଣସି ଜୀବନସତ୍ତା ଥିଲେ ତାହା ନିଶ୍ଚିତ କେବେଠୁ ଧ୍ୱଂସ ପାଇ ସାରିବଣି । ଅସମ୍ଭବ ତାତି ତଥା ବିଷାକ୍ତ ବାଷ୍ପର ଦୁନିଆ ଏହି ଗ୍ରହର ପରିବେଶ ଜୀବନଧାରଣ ପାଇଁ ଆଦୌ ସହନୀୟ ନୁହେଁ । ସୁତରାଂ ଆଗାମୀ ଦିନର ଅବକ୍ଷୟମୁଖୀ ପୃଥିବୀ ଛାଡ଼ି ଗ୍ରହଗ୍ରହାନ୍ତରରେ ବସା ବାନ୍ଧିବାର ସ୍ୱପ୍ନ ଦେଖୁଥିବା ଆଜିର ମଣିଷ ପାଇଁ ଏ ଗ୍ରହଟି ବିଶେଷ ସମ୍ଭାବନା ବହନ କରେନାହିଁ । ଏହା ଆମ ପାଇଁ ଦୂର ଆକାଶର ଦୀପଟିଏ ହୋଇ ରହିଯାଇଛି ମାତ୍ର ।

*ଆଞ୍ଚଳିକ ବିଜ୍ଞାନ କେନ୍ଦ୍ର, ପଣ୍ଡିତ ଜବାହରଲାଲ ନେହେରୁ ମାର୍ଗ, ଭୁବନେଶ୍ୱର- ୭୫୧୦୧୩*

**

---

**ବିଜ୍ଞାନ କୁଇଜର ଉତ୍ତର--** ୧ । ୪ଟି, ୨ । ୨୮.୩୫ ଗ୍ରାମ୍, ୩ । ଜୁନ୍ ୫, ୪ । ହାନସ୍ ଲିପରସେ, ମେକ୍ସିକୋ, ୫ । ନିର୍ମୁଳୀ, ୬ । ପିଠି, ୭ । ମାଇକେଲ୍ ଫାରାଡ଼େ, ୮ । ଚୂନପଥର, ୯ । ୬ ମାସ । ୧୦ । ବାଦୁଡ଼ି ।



ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

ବାଲେଶ୍ୱର ଅଡ଼ା ହାଇସ୍କୁଲ ଦଶମ ଶ୍ରେଣୀ ଛାତ୍ର ପ୍ରଦୀପ କୁମାର ରାୟ୍ ମହାପାତ୍ର ପଚାରିଛନ୍ତି-- ୧) ସର୍ବଜନୀନ ବା ସାର୍ବଜନୀନ ଭିତରୁ କେଉଁଟି ଶୁଦ୍ଧ ? ୨) ଆନୁଷଙ୍ଗିକର ଅର୍ଥ ୩) ତଦନ୍ତ ଓ ତଦଂତ ମଧ୍ୟରୁ କେଉଁଟି ଠିକ୍ ?

'ସର୍ବଜନ'ରେ ଇନ୍ ପ୍ରତ୍ୟୟ ହେଲେ 'ଆ'କାରର ଆଗମ ହୋଇ 'ସାର୍ବଜନୀନ' ହେବ । ସେହିପରି ପ୍ରସଙ୍ଗ+ଇକ=ପ୍ରାସଙ୍ଗିକ, ଅନୁଷଙ୍ଗ+ଇକ=ଆନୁଷଙ୍ଗିକ, ସମାଜ+ଇକ=ସାମାଜିକ; ମାତ୍ର ନ ସାମାଜିକ= ଅସାମାଜିକ ହେଉଥିବାରୁ ଏଠାରେ 'ଆ'ରେ ପରିବର୍ତ୍ତନ ହେବନାହିଁ କିମ୍ବା 'ଆ'କାରର ଆଗମ ହେବନାହିଁ।

ଆନୁଷଙ୍ଗିକର ଅର୍ଥ-- ବିଷୟ ସହିତ ସଂପୃକ୍ତ। ପରୀକ୍ଷା ଦେବାର ଆନୁଷଙ୍ଗିକ କାର୍ଯ୍ୟମାନ ହେଲା-- ପରୀକ୍ଷା ପାଇଁ ପ୍ରସ୍ତୁତି, ଯଥା-- ପଠନ, ଲିଖନ, ଆଲୋଚନା ଅଦି ସମ୍ଭାବ୍ୟ ପ୍ରଶ୍ନୋତ୍ତର କାର୍ଯ୍ୟ। ପୁଣି ପରୀକ୍ଷା ହଲ୍‌କୁ ଯିବା, ଯଥା ସମୟରେ ପହଞ୍ଚି ପ୍ରଶ୍ନପତ୍ର ଅନୁଧ୍ୟାନପୂର୍ବକ ପରୀକ୍ଷା ଖାତାରେ ଉତ୍ତର ଲେଖିବା କିମ୍ବା ମୌଖିକ ପରୀକ୍ଷା ଥିଲେ ପରୀକ୍ଷକଙ୍କ ସମ୍ମୁଖରେ ଉପସ୍ଥିତ ହୋଇ ଉତ୍ତର ଦେବା ଆଦି ପରୀକ୍ଷା ଦେବାର ଆନୁଷଙ୍ଗିକ କାର୍ଯ୍ୟକ୍ରମ।

ତଦ୍+ଅନ୍ତ = ତଦନ୍ତ = ଅନୁସନ୍ଧାନ। ଏହାର ପ୍ରକୃତ ଅର୍ଥ-- କୌଣସି ବିଷୟର ଅନୁସନ୍ଧାନ କରି ତାହାର ଶେଷ ସିଦ୍ଧାନ୍ତରେ ପହଞ୍ଚିବା। 'ନ୍ତ' ଅକ୍ଷରଟି ନ+ତର ମିଶ୍ରଣରେ ଗଠିତ। ଓଡ଼ିଆ ଅକ୍ଷର ଧ୍ୱନି-ବିଜ୍ଞାନ ସିଦ୍ଧ। କ ଚ ଟ ତ ପ ଆଦି ଯେଉଁ ବର୍ଗୀକରଣ କରାଯାଇଛି, ତାହା କଣ୍ଠ୍ୟ, ତାଲବ୍ୟ, ମୂର୍ଦ୍ଧଣ୍ୟ, ଦନ୍ତ୍ୟ ଓ ଓଷ୍ଠ୍ୟ-- ଏହିପରି ଉଚ୍ଚାରଣ କ୍ରମକୁ ଧରି ସଜାଯାଇଛି। ଙ, ଞ, ଣ, ନ ଓ ମ ନାସିକ୍ୟ ବର୍ଣ୍ଣ ସେହି ବର୍ଗର ଅନ୍ତର୍ଭୁକ୍ତ ଅକ୍ଷରଗୁଡ଼ିକ ଯୁକ୍ତ ହୋଇ ଯୁକ୍ତାକ୍ଷର ଗଠିତ ହୋଇଥାଏ। ତେଣୁ 'ତ' ବର୍ଗ (ତ ଥ ଦ ଧ ନ)ର ନାସିକ୍ୟ ବର୍ଣ୍ଣ (ବର୍ଗ ଶେଷରେ ଥିବା ଙ ଞ ଣ ନ ମ) ସଂଯୋଗ ଘଟି 'ନ୍ତ' ଯୁକ୍ତାକ୍ଷର ସୃଷ୍ଟି ହେଉଥିବାରୁ 'ନ୍ତ' ଲିଖନ ହିଁ ଠିକ୍। ମାତ୍ର ଏବେ ଲିପି ସଂସ୍କାରରେ ପୂର୍ବ ବର୍ଣ୍ଣରେ 'ଂ' (ଅନୁସ୍ୱାର) ପ୍ରୟୋଗ କରି ଲେଖାଯାଉଛି। ଉଚ୍ଚାରଣରେ କିଛି ପାର୍ଥକ୍ୟ ଥିଲେ ବି ଏହା କିଛିକିଛି ଗୃହୀତ ହେଲାଣି। (ପୁରୁଣା ସଂସାରରୁ)

*'ନିର୍ମଳ କୁଟୀର', ବଙ୍ଗାଳି ସାହି, କଟକ-୭୫୩୦୦୯*

---

## ପିଲାଙ୍କ ପାଇଁ '୯'ର ରହସ୍ୟ

❂ ୧ରୁ ୯ ସଂଖ୍ୟା ମଧ୍ୟରୁ ଯେକୌଣସି ଏକ ସଂଖ୍ୟା ସହ ୯ ଗୁଣନ କଲେ, ଏହାର ଗୁଣନଫଳ ସଂଖ୍ୟାର ଯୋଗଫଳ ୯ ହେବ । ଉଦାହରଣ ସ୍ୱରୂପ--

୨ X ୯ = ୧୮, ୩ X ୯ = ୨୭

୧ + ୮ = ୯, ୨ + ୭ = ୯ ..... ଏହିପରି

❂ ୩୭୦୩୭ ସହ ୧ ରୁ ୯ ସଂଖ୍ୟା ମଧ୍ୟରୁ ଗୋଟିଏ ସଂଖ୍ୟା ଗୁଣନ କର । ଏହାର ଗୁଣନଫଳରେ ୩ ଗୁଣିଲେ ଗୁଣନଫଳରେ କେବଳ ପ୍ରଥମ ଗୁଣିଥିବା ସଂଖ୍ୟାଗୁଡ଼ିଏ ଆସିବ । ଉଦାହରଣ ସ୍ୱରୂପ--

୩୭୦୩୭ X ୫ = ୧୮୫୧୮୫ X ୩ = ୫୫୫୫୫୫

**-- ଡାକ୍ତର ଅଜିତାନନ୍ଦ ଗୋସ୍ୱାମୀ,**
ଅଚ୍ୟୁତାନନ୍ଦ ମାର୍ଗ, କଟକ-୧୨



# ବଡ଼ଠାକୁରଙ୍କ ସର୍ପଦଳନ

ଶ୍ରୀ ନନ୍ଦକିଶୋର ସିଂହ

ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ କାଳୀୟଦଳନ କରିବା କଥା ଆମେ ଭାଗବତରୁ ଜାଣିଛେ । କାଳିନ୍ଦୀ ହ୍ରଦର ଜଳକୁ ପାନୀୟ ଉପଯୋଗୀ କରିବା ପାଇଁ ଶ୍ରୀକୃଷ୍ଣ ଏ ପଦକ୍ଷେପ ନେଇଥିଲେ ।

କଥାରେ ଅଛି-- ଜଗନ୍ନାଥ ଷୋଳ କଳା
ତୁ ତ କଳାଏ ନନ୍ଦବଳା

ଏବେ ସେଇ ଷୋଳକଳାର ଜଗନ୍ନାଥ କିପରି ସର୍ପଦଳନ କରିଥିଲେ, ସେହି ବିଷୟରେ କଥାଟିଏ ଶୁଣାଯାଏ । କଥାଟି ଠିକ୍ ଏହିପରି--

ସେଦିନ ବଡ଼ ଦେଉଳରେ ଗୋଟେ ଅଦ୍‌ଭୁତ ଘଟଣା ଘଟିଲା । ମନ୍ଦିର ସେବକମାନେ ରତ୍ନ ସିଂହାସନ ପାଖରେ ଠିଆ ହୋଇଛନ୍ତି । ମନ ଦୁଃଖ । କ'ଣ କରାଯିବ । ଭିତର ଗମ୍ଭୀରାରୁ ପାଣି ନ ଯାଇ ସେମିତି ଜମି ରହିଛି । ଗମ୍ଭୀରାଧୁଆ ପାଣିତକ ଥିଲା ରତ୍ନବେଦି ପାଖରେ ଯେମିତିକି ସେମିତି ଠିଆ ହୋଇ ରହିଛି । ଘର ଭିତରେ ନଳା ମୁହଁ ଖୋଲା; କିନ୍ତୁ ନଳା ବାଟେ ପାଣି ପଦାକୁ ଯାଉନାହିଁ । କେଉଁଥିପାଇଁ ଏପରି ହେଲା ? ଏବେ କି ଉପାୟ କରାଯିବ । ଦିଅଁମାନଙ୍କ ନୀତି କିପରି ହେବ !

ଅବସ୍ଥା ବଳେଇ ଯିବାରୁ ମୁଦିରଥଙ୍କୁ ଖବର ଦିଆଗଲା । ମୁଦିରଥ ଧଇଁସଇଁ ହୋଇ ଆସି ଦେଉଳ ଅବସ୍ଥା ନିଜ ଆଖିରେ ଦେଖିଲେ । ଜଳ ନିଷ୍କାସନ ପାଇଁ ବହୁତ ଚେଷ୍ଟା କରି କିଛି ଲାଭ ହେଲାନାହିଁ । ଦିନେ ତ ଏପରି ଘଟି ନ ଥିଲା, ଆଜି କାହିଁକି ଏପରି ଅଘଟଣ ! ମୁଦିରଥ କରୁଣ କଣ୍ଠରେ ଡାକିଲେ-- ହେ ବଳିଆରଭୁଜ, ହେ ବଡ଼ ଠାକୁର, କରୁଣା କର, ଏ ଅଘଟଣରୁ ଉଦ୍ଧାର କର । ଆମେ ଆମର ପାରୁପର୍ଯ୍ୟନ୍ତ ଚେଷ୍ଟା କରି ପାଣିକୁ ନଳା ବାଟେ ବାହାର କରିପାରିଲୁନି । ଏବେ ସବୁ ତୁମରି ଛାଡ଼ିଦେଉଛୁ ।

ମୁଦିରଥ ପୁଣି ଭାବିଲେ-- ବୋଧହୁଏ ଦେଉଳ ନୀତିରେ କିଛି ବିଭ୍ରାଟ ଘଟିଛି । ସେବକମାନେ ତ ଜାଣିଶୁଣି କିଛି ଭୁଲ୍ କରିବେ ନାହିଁ । ହୁଏତ ଅଜାଣତରେ କିଛି ଭୁଲ୍ ହୋଇଯାଇଥିବ । ସେଥିପାଇଁ ବଡ଼ଠାକୁର କୋପ କରିଥିବେ । ତେଣୁ ସେ ସେବକମାନଙ୍କୁ ଜଣଜଣ କରି ଡାକି ଚକାଡୋଳାଙ୍କ ଆଗରେ ଦୋଷ ସ୍ୱୀକାର କରିବାକୁ କହିଲେ । ମୁଦିରଥଙ୍କ କଥାକୁ ସେବକମାନେ ନ ମାନିବେ କିପରି ? ସମସ୍ତେ ଜଣ ଜଣ କରି ରତ୍ନବେଦି ପାଖରେ ବଡ଼ଠାକୁରଙ୍କୁ ସାଷ୍ଟାଙ୍ଗ ପ୍ରଣିପାତ କରି କ୍ଷମାପ୍ରାର୍ଥୀ ହେଲେ; କିନ୍ତୁ ଏସବୁର କିଛି ଫଳ ହେଲାନାହିଁ । ଏଣୁ ମୁଦିରଥ ମନ୍ଦିରର ମୁଖ୍ୟସେବକ ଗଜପତି ମହାରାଜାଙ୍କୁ ଏକଥା ଜଣାଇଲେ । ଗଜପତି ଆସି ଗୁହାରି ପଡ଼ିଲେ । ସାରାଦିନ ଉପବାସ ରହିଲେ ।

ଗଜପତି ନିର୍ଜଳା ଉପବାସ ରହି ଗୁହାରି ପଡ଼ିଛନ୍ତି-- ଏକଥା ଚାରିଆଡ଼େ ବିଜୁଳି ପରି ଖେଳିଗଲା । ସବୁଠି ସେଇ ଅଘଟଣର ଆଲୋଚନା । ଗମ୍ଭୀରା ପାଣି

ନଳାବାଟେ ଯାଉନି କାହିଁକି ? ନଳାକୁ ରୁଦ୍ଧ କରିବାକୁ କାହାର ସାହସ ଶକ୍ତି ଅଛି ବା !

ଗଜପତି ମହାରାଜାଙ୍କ ଡାକ ଜଗନ୍ନାଥ ଶୁଣିଲେ। ସେ କହିଲେ-- ଗଜପତି ବ୍ୟସ୍ତ ହୁଅନା। ତୁମ୍ଭେ କିମ୍ବା ତୁମ୍ଭ ସେବକମାନେ କେହି କିଛି ଦୋଷ କରିନାହାନ୍ତି। କିନ୍ତୁ ଯିଏ ଦୋଷ କରିଛି, ତାକୁ ଦଣ୍ଡ ମିଳିବା ବ୍ୟବସ୍ଥା ମୁଁ କରିବି।

ଜଗନ୍ନାଥଙ୍କ ଏହି ଆଦେଶ ଶୁଣି ସମସ୍ତେ ଆଶ୍ୱସ୍ତ ହେଲେ। ପୁଣି ସେବକମାନେ ଜଗନ୍ନାଥଙ୍କ ପାଦତଳେ ପ୍ରଣାମ କରି ଯୋଡ଼ ହାତରେ ଠିଆ ହେଲେ।

ଏତିକିବେଳେ ଆକାଶରେ କଳାହାଣ୍ଡିଆ ମେଘ ଘୋଟି ଆସିଲା। ଘଡ଼ଘଡ଼ି ଚଡ଼ଚଡ଼ିରେ ଚାରିଆଡ଼ କମ୍ପିଗଲା। ହଠାତ୍ ଗୋଟିଏ ବିଜୁଳି ମନ୍ଦିର ଭିତରେ ତୀର ବେଗରେ ପଶିଗଲା ଏବଂ ଗମ୍ଭୀରାନଳା ଦେଇ ବାହାରକୁ ଚାଲିଗଲା, ଆଉ ତା ସଙ୍ଗେ ସଙ୍ଗେ ଗମ୍ଭୀରା ଭିତରେ ଅଟକିଥିବା ପାଣି ନଳା ଦେଇ ବାହାରକୁ ଚାଲିଗଲା।

ଯେମିତି ହଠାତ୍ ମେଘ ଉଠାଇଥିଲା, ସେମିତି ହଠାତ୍ ମେଘ ତା' ବାଟରେ ଚାଲିଗଲା। କିନ୍ତୁ ଏହା ଭିତରେ ଏକ ଆଶ୍ଚର୍ଯ୍ୟ ଘଟଣା ସମସ୍ତଙ୍କୁ ଚମତ୍କୃତ କଲା। ଗମ୍ଭୀରାନଳା ବାଟେ ପଶି ଯିବା ସଙ୍ଗେ ସଙ୍ଗେ ଏକ ବିରାଟ ସାପ ଖଣ୍ଡ ଖଣ୍ଡ ହୋଇ ଭାସିଯାଉଥିଲା। ବୋଧହୁଏ ଏଇ ବିରାଟ ସାପ ନଳା ମୁହଁକୁ ବନ୍ଦ କରି ରଖିଥିଲା। ବଡ଼ଠାକୁରଙ୍କ କୋପାନଳରୁ କିଏ ବା ରକ୍ଷା ପାଇବ ? ସମସ୍ତେ କୁହାକୁହି ହେଲେ, "ଏଇ ସର୍ପ କେଉଁ ଅଭିଶାପ ପାଇ ଏଭଳି ଜନ୍ମ ପାଇଥିଲା ? ଏ କର୍ମ କରି ଜଗନ୍ନାଥଙ୍କ ବଜ୍ର ପ୍ରହାରରେ ମୁକ୍ତି ପାଇଗଲା। ସର୍ପ ଜନ୍ମରୁ ଉଦ୍ଧାର ପାଇଲା।"

*କୋରେଇ, ଯାଜପୁର- ୭୫୫୦୨୨*

✲✲




ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ

୧। ସମ୍ବିଧାନର କେତେତମ ଧାରାକୁ ଏହାର ଆତ୍ମା ଏବଂ ହୃଦୟ (Soul and Heart) ବୋଲି କୁହାଯାଇଥାଏ ?

୨। ପୃଥିବୀର ଉଚ୍ଚତମ ଜଳପ୍ରପାତ (Highest Waterfall) ଆଞ୍ଜେଲ କେଉଁ ଦେଶରେ ଅବସ୍ଥିତ?

୩। କେଉଁ ରାଜ୍ୟକୁ ଭାରତର ମସଲା ବଗିଚା (Spice garden of India) ଭାବରେ ଅଭିହିତ କରାଯାଇଥାଏ ?

୪। ଏସିଆ ମହାଦେଶର ବୃହତ୍ତମ ଷ୍ଟକ୍ ଏକ୍ସଚେଞ୍ଜ୍‌ର ନାମ କ'ଣ ?

୫। ଭାରତର ପ୍ରଧାନମନ୍ତ୍ରୀ ପଦରୁ ଇସ୍ତଫା ପ୍ରଦାନ କରିଥିବା ପ୍ରଥମ ବ୍ୟକ୍ତି ଜଣକ କିଏ ?

୬। ଭାରତରେ ଦୁଇ ଥର କାମଚଳା ପ୍ରଧାନମନ୍ତ୍ରୀ (Acting Prime Minister of India)ର ଦାୟିତ୍ୱ ତୁଲାଇଥିବା ବ୍ୟକ୍ତିଙ୍କ ନାମ କ'ଣ ?

୭। କେଉଁ ରାଜ୍ୟଟି ଭାରତବର୍ଷର କଫି ଉତ୍ପାଦନରେ ଅଗ୍ରଣୀ ?

୮। ସଙ୍ଗମ ଯୁଗର ସାହିତ୍ୟ (Literature) କେଉଁ ଭାଷାରେ ଲେଖାଯାଇଥିଲା ?

୯। ବୃକ୍ଷବିହୀନ ପମ୍ପାସ (Pampas) ତୃଣଭୂମି କେଉଁ ମହାଦେଶରେ ଦେଖାଯାଇଥାଏ ?

୧୦। ଭାରତର ବୃହତ୍ତମ କୃତ୍ରିମ ହ୍ରଦ (Largest Artificial Lake)ର ନାମ କ'ଣ ?

*ଦୁର୍ଗାପୁର, ତାଳଚେର, ଅନୁଗୁଳ- ୭୫୯୧୦୦*

*(ଉତ୍ତର ୩୮ ପୃଷ୍ଠାରେ)*



# ଶରତ ଶୋଭା

ଶ୍ରୀ କାହ୍ନୁଚରଣ ପାଣିଗ୍ରାହୀ

ଶରତ ନଈର ଶୋଭାକୁ ଦେଖି
ସେ ଯେଉଁ କବିତା ଲେଖାଥିଲା ଆଗେ
ଏଣିକି ସେସବୁ ହେଉନି ଲେଖି ।
ଏଇମିତି ଏକ ଭାବନା ଆସି
କବିତାସରାଗୀ ମନରେ ସେ କେବେ
ଦେଖା ଦେଇ ପୁଣି ଯାଉଛି ଭାସି ।
ସେତେବେଳେ କବି ବସିଯାଉଥିଲା
ଛାଇରେ ଛଇଳ ଆମ୍ର ତରୁର ମୂଳେ
ଘଞ୍ଚ ବନର ଶୋଭା ଦେଖୁଥିଲା
ତରୁପତ୍ରର ଡାଳେ ।
ଆଉ ପୁଣି କେବେ ଦେଖୁଥିଲା ବସି
କାଶକୁସୁମର ହାସ
ନଈ ଧାରେ ଧାରେ ଶୁକ୍ଳିମା ଯା'ର
ଜରତୀ ବରଷା କେଶ ।
ଏବେ କାଶ ଆଉ ନଈ ଧାରେ ଧାରେ
ଭିଡୁନାଇଁ ଚେର ତାର
ପଥର ଚଟାଣ ପଡ଼ିଚି ସେଠାରେ
ଧରି ଶିଉଳିର ଭାର
ଆମ୍ବ ନିମ୍ବ ପୁଣି ପଣସ ବା ଜାମୁ
କିଛି ଆଉ ଗଛ ନାଇଁ
ବରଷାର ବନ୍ଧୁ କଦମ୍ବକୁ ଆଉ
ଦେଖୁନାଇଁ ଭରା ନଈ ।
ତେଣୁ ସେ କବିତା କୁଆଡୁ ଆସିବ ?...
ପୋଥି ବାଇଗଣ ହୋଇ
ରହିଥାଉ ପଛେ, ଏ ମାଟିର କବି
ସେ ଗୀତ ଭୁଲିବ ନାଇଁ ।

*ବିରୁହାଁ, ଜାହାଙ୍ଗୀର, ଧାମନଗର, ଭଦ୍ରକ*

**

---

**ଅଛି-ନାହିଁ** –ଚିତ୍ର ଦୁଇଟି ମଧ୍ୟରେ ଅତି କମ୍‌ରେ ୭ଟି ପ୍ରଭେଦ ଅଛି, ବାହାର କରନ୍ତୁ ତ ! (ଉତ୍ତର ୪୨ପୃଷ୍ଠାରେ)











ପୃଥିବୀର ଦେଶଗୁଡ଼ିକ ମଧ୍ୟରୁ ଜାପାନ ଏଭଳି ଏକ ଦେଶ, ଯାହାର ଅଧିବାସୀମାନେ ପରିଶ୍ରମ, ନିଷ୍ଠା ଓ ଅଧ୍ୟବସାୟ ଦ୍ୱାରା ନିଜ ଦେଶକୁ ଏକ ଉନ୍ନତ ଦେଶ ଭାବରେ ପ୍ରତିଷ୍ଠା କରିବା ପାଇଁ ସତତ ଚେଷ୍ଟିତ । ତାଙ୍କର ଏହି ସଫଳତା ସମଗ୍ର ପୃଥିବୀ ହୃଦୟଙ୍ଗମ କରେ ।

୧୯୪୫ ମସିହା ବେଳକୁ ଏହି ଦେଶର ହିରୋସିମା ଓ ନାଗାସାକି ସହରଦ୍ୱୟ ଖୁବ୍ ଉନ୍ନତ ସହର ଭାବେ ପରିଚିତ ଥିଲା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଏହା ଉପରେ ପରମାଣୁ ବୋମା ଆକ୍ରମଣ ପରେ ଏହା ପ୍ରାୟ ନିଶ୍ଚିହ୍ନ ହୋଇଗଲା । କିନ୍ତୁ ଆଶ୍ଚର୍ଯ୍ୟର କଥା ୧୦ ବର୍ଷ ମଧ୍ୟରେ ଆର୍ଥିକ ଦୃଷ୍ଟିରୁ ପୁଣି ସେହି ପୂର୍ବ ହିରୋସୀମାର ହୃତଗୌରବ ଫେରି ଆସିପାରିଛି । (ଚିତ୍ର- କଡ଼ରେ ଯୁଦ୍ଧପରର ଅବସ୍ଥା ଓ ପ୍ରଚ୍ଛଦ ପଛରେ ବର୍ତ୍ତମାନର ଅବସ୍ଥା)

ଜାପାନରେ କୌଣସି ପ୍ରାକୃତିକ ସମ୍ପଦ ନାହିଁ ଏବଂ ସେମାନେ ଗୋଟିଏ ବର୍ଷରେ ଶହ ଶହ ଭୂମିକମ୍ପର ସମ୍ମୁଖୀନ ହୁଅନ୍ତି । ତଥାପି ମଧ୍ୟ ଆର୍ଥିକ ଦୃଷ୍ଟିରୁ ଏହା ଦ୍ୱିତୀୟ ବୃହତ୍ତମ ରାଷ୍ଟ୍ର ଭାବେ ପରିଗଣିତ ହେବାରେ କୌଣସି ବାଧା ସୃଷ୍ଟି କରିନାହିଁ । ଏ ସବୁର ଚାବିକାଠି ଜାପାନୀବାସୀଙ୍କ ପରିଶ୍ରମ, ନିଷ୍ଠା ଓ ଅଧ୍ୟବସାୟ ।

---

**ବିଶ୍ୱାସ ନ ହେଲେ ବି ସତ୍ୟ** -- ଶ୍ରୀ ଜ୍ୟୋତି ରଂଜନ ବିଶ୍ୱାଳ



ବ୍ରାଜିଲର ରିଓ ଡି ଜେନେଇରୋରେ ବାସ କରନ୍ତି ଚଉଦ ବର୍ଷ ବୟସ୍କା ନତାସା ମୋରାଏସ୍ ଡି ଆଣ୍ଡ୍ରାଡେ (Natasha Moraes de Andrade) । ତାଙ୍କର ଉଚ୍ଚତା ପାଞ୍ଚଫୁଟ ତିନି ଇଞ୍ଚ ହୋଇଥିବାବେଳେ କେଶଗୁଡ଼ିକ ପାଞ୍ଚଫୁଟ ଦୁଇ ଇଞ୍ଚ ଲମ୍ବ ଅଟେ । ବାସ୍ତବିକ୍ କେଶବତୀ କନ୍ୟାର ଜ୍ୱଳନ୍ତ ନିଦର୍ଶନ ହେଉଛନ୍ତି ନତାସା ।



# ତିନିପୁଅ ଓ ସତର ଓଟ

ଭାବାନୁବାଦ- ଇଂ ରଘୁନାଥ ପ୍ରସାଦ ଦାସ

ଜଣେ ବୃଦ୍ଧବ୍ୟକ୍ତିର ସତରଟି ଓଟ ଥିଲେ । ଯେତେବେଳେ ତାଙ୍କର ମୃତ୍ୟୁ ସମୟ ପାଖେଇ ଆସିଲା, ସେ ତାଙ୍କର ତିନି ପୁଅଙ୍କୁ ପାଖକୁ ଡାକି କହିଲେ, "ଦେଖ ପିଲାଏ, ମୁଁ ଆଉ ବେଶୀଦିନ ବଞ୍ଚିବି ନାହିଁ। ମୋର ସମ୍ପତ୍ତି କହିଲେ ଏଇ ସତରଟି ଓଟ। ମୋର ମୃତ୍ୟୁ ପରେ ତମେ ମୋ କଥା ମାନି ତାଙ୍କୁ ତମ ଭିତରେ ବାଣ୍ଟିଦେବ। ଓଟମାନଙ୍କ ଭିତରୁ ଅଧେ ବଡ଼ପୁଅ ନେବ, ଏକ ତୃତୀୟାଂଶ ମଝିଆଁ ପୁଅ ନେବ ଓ ସାନପୁଅ ନଅ ଭାଗରୁ ଭାଗେ ନେବ।"

ଏତିକି କହି ବୃଦ୍ଧଜଣଙ୍କ ଶେଷନିଃଶ୍ୱାସ ତ୍ୟାଗ କଲେ। ପିଲାମନେ ବି ଓଟମାନଙ୍କୁ ବାଣ୍ଟି ନେବାକୁ ବସିଲେ। କିନ୍ତୁ ସତରଟି ଓଟଙ୍କୁ ସେମାନେ କିପରି ଦୁଇ, ତିନି ବା ନଅରେ ଭାଗ କରିବେ, ସେମାନଙ୍କୁ କିଛି ବୁଦ୍ଧିବାଟ ଦେଖାଗଲା ନାହିଁ। ଶେଷରେ ତିନି ପୁଅଯାକ ଜଣେ ବୁଢ଼ିଆ ଲୋକ ପାଖକୁ ଗଲେ।



ବୁଢ଼ିଆ ଲୋକଟି ସବୁ ଶୁଣି ସାରିବା ପରେ ନିଜର ଗୋଟିଏ ଓଟ ଧରି ସେଠାକୁ ଗଲେ ଓ ସତରଟି ଓଟ ପାଖରେ ନିଜର ଓଟଟିକୁ ରଖିଦେଲେ। ବର୍ତ୍ତମାନ ଓଟସଂଖ୍ୟା ଅଠରକୁ ବୃଦ୍ଧି ପାଇଲା।

ବର୍ତ୍ତମାନ ସେ ବୃଦ୍ଧବ୍ୟକ୍ତିଙ୍କ କଥା ଅନୁସାରେ କାର୍ଯ୍ୟ କଲେ। ଅଠରଟିର ଅଧା, ଅର୍ଥାତ୍ ନଅଟି ଓଟ ବଡ଼ପୁଅକୁ ଦେଲେ। ଅଠରଟିର ଏକ ତୃତୀୟାଂଶ, ଅର୍ଥାତ୍ ଛଅଟି ଓଟ ମଝିଆଁ ପୁଅକୁ ଦେଲେ, ଅଠରଟିର ଏକ ନବମାଂଶ, ଅର୍ଥାତ୍ ଦୁଇଟି ଓଟ ସାନପୁଅକୁ ଦେଲେ। ଏପରି ନଅ ଯୁକ୍ତ ଛଅ ଯୁକ୍ତ ଦୁଇ-- ସର୍ବମୋଟ ସତର ହେଲା। ବୁଢ଼ିଆ ଲୋକଟି ନିଜର ଓଟଟିକୁ ଧରି ଘରକୁ ଫେରିଗଲା। ଆମେ ଏଥିରୁ କ'ଣ ଶିଖିଲେ ?

ଦରକାର ପଡ଼ିଲେ ସମସ୍ୟାର ସମାଧାନ ପାଇଁ ଏହି ଅଷ୍ଟତମ ଓଟ ଭଳି ଗୋଟିଏ ଜିନିଷ ବାହାର କରି ସମାଧାନ କରିବା। ସମାଧାନର ପ୍ରଥମ ସୂତ୍ର ହେଉଛି, ସମାଧାନଟିଏ ମିଳିବ ବୋଲି ବିଶ୍ୱାସ କରିବା। ଯଦି ଆମେ ଏହାର କୌଣସି ସମାଧାନ ନାହିଁ ବୋଲି ଚିନ୍ତା କରିବା, ତେବେ କେବେହେଲେ କୌଣସି ସମାଧାନରେ ପହଞ୍ଚି ପାରିବା ନାହିଁ।

*ଦେଉଳସାହି, କଟକ*

***

---

**ସାଧାରଣଜ୍ଞାନ ପରୀକ୍ଷାର ଉତ୍ତର :** ୧। ଧାରା ୩୨ (Article 32), ୨। ଭେନ୍‌ଜୁଏଲା , ୩। କେରଳ, ୪। ମୁମ୍ବାଇ ଷ୍ଟକ୍ ଏକ୍ସଚେଞ୍ଜ୍, ୫। ମୋରାରଜୀ ଦେଶାଇ, ୬। ଗୁଲ୍‌ଜାରୀ ଲାଲ୍ ନନ୍ଦା। ୭। କର୍ଣ୍ଣାଟକ, ୮। ତାମିଲ୍, ୯। ଦକ୍ଷିଣ ଆମେରିକା, ୧୦। ଗୋବିନ୍ଦ ସାଗର।



# ସେବାରେ ନ ଥାଏ ଶତ୍ରୁ ଓ ମିତ୍ର

ଡକ୍ଟର ରବିନାରାୟଣ ସାହୁ

ଆଉରଙ୍ଗଜେବଙ୍କ ମନରେ ସାମ୍ରାଜ୍ୟ ବିସ୍ତାର କରିବାର ଲାଳସା ଥାଏ। ଏହି ଲକ୍ଷ୍ୟରେ ସେ ନିଜର ବିଶାଳ ସୈନ୍ୟସାମନ୍ତ ଓ ମଜଭୁତ ସାଧନା ବଳରେ ଗୋଟିଏ ପରେ ଗୋଟିଏ ରାଜ୍ୟ ନିଜ ଅଧୀନକୁ ଆଣିବାରେ ଲାଗିଥା'ନ୍ତି। ତାଙ୍କର ସେନାରେ ପ୍ରାୟ ପାଞ୍ଚଲକ୍ଷ ସୈନିକ ଥିଲେ, ଯେଉଁମାନେ ଯୁଦ୍ଧକୌଶଳରେ ପାରଙ୍ଗମ ଥିଲେ।

ଥରେ ଗୁରୁଗୋବିନ୍ଦ ସିଂହଙ୍କ ଅଧୀନରେ ଥିବା ଆନନ୍ଦପୁର ଉପରେ ଆଉରଙ୍ଗଜେବ ଚଢ଼ାଉ କଲେ। ଗୁରୁ ଗୋବିନ୍ଦ ସିଂହଙ୍କ ପାଖରେ ମାତ୍ର ଦଶହଜାର ସୈନିକ। ତଥାପି ଦୃଢ଼ ମନୋବଳ ନେଇ ସୈନିକମାନେ ଆଉରଙ୍ଗଜେବଙ୍କ ବିଶାଳ ସେନାର ସମ୍ମୁଖୀନ ହେଲେ। ସତ୍ୟ ଓ ନ୍ୟାୟର ଶକ୍ତି ତଥା ଗୋବିନ୍ଦ ସିହଙ୍କ ପରି ତେଜସ୍ୱୀ, ଧର୍ମପ୍ରାଣ ଏବଂ ସାହସୀ ବୀରଙ୍କ ନେତୃତ୍ୱରେ ଲଢ଼ାଇ ଚାଲିଲା।

ଗୋବିନ୍ଦ ସିଂହଙ୍କ ଖାଲସା ବୀରମାନଙ୍କ ମଧ୍ୟରେ କହ୍ନେୟା ନାମରେ ଜେଣେ ସୈନିକ ଥିଲେ। ଯୁଦ୍ଧରେ ଆଘାତ ପାଇଥିବା ସୈନିକମାନଙ୍କୁ ପାଣି ପିଆଇବା ତାଙ୍କର କାମ ଥିଲା। ଥରେ ଲଢ଼େଇ ଭିତରେ ଶିଖ୍ ସୈନିକମାନେ ଦେଖିଲେ ଯେ ଶତ୍ରୁ ସୈନିକମାନଙ୍କୁ କହ୍ନେୟା ପାଣି ପିଆଉଛନ୍ତି। ସେମାନଙ୍କର କଥା ବୁଝାସୁଝା କରୁଛନ୍ତି। ସେଦିନର ଯୁଦ୍ଧ ଶେଷ ହେବାପରେ ଜଣେ ଶିଖ୍ ସୈନିକ ଗୁରୁ ଗୋବିନ୍ଦ ସିଂହଙ୍କ ପାଖରେ କହ୍ନେୟାଙ୍କ ଏତାଦୃଶ କାର୍ଯ୍ୟ ବିଷୟରେ ଅଭିଯୋଗ କଲେ। ଗୁରୁଜୀ ସଙ୍ଗେ ସଙ୍ଗେ କହ୍ନେୟାଙ୍କୁ ଡାକି ଏ ବିଷୟରେ ସତ୍ୟତା ଜାଣିବା ପାଇଁ ପ୍ରଶ୍ନ କରନ୍ତେ, କହ୍ନେୟା କହିଲେ, "ମୁଁ କିଛି ଜାଣିନାହିଁ ଗୁରୁଜୀ। ଆପଣ ମୋତେ ପାଣି ପିଆଇବା କାର୍ଯ୍ୟରେ ନିଯୁକ୍ତି ଦେଇଛନ୍ତି, ତେଣୁ ମୁଁ ସମସ୍ତ ଆହତ ସୈନିକଙ୍କୁ ପାଣି ପିଆଉଛି। ସେତେବେଳେ କିଏ ଶତ୍ରୁ, କିଏ ମିତ୍ର, ମୁଁ ଦେଖେନା। ମୋତେ ସମସ୍ତେ ସମାନ ପରି ଲାଗନ୍ତି। ମୁଁ ମୋର୍ କର୍ତ୍ତବ୍ୟ କରି ଚାଲିଥାଏ।"

କହ୍ନେୟାଙ୍କ କଥା ଶୁଣି ଗୁରୁଜୀ ଅତି ସ୍ନେହରେ କହିଲେ, "ଅସହାୟ ତ ଅସହାୟ, ସେ ନିଜର ହେଉ ବା ପର। ତା'ର ସେବା କରିବା ମନୁଷ୍ୟର କର୍ତ୍ତବ୍ୟ। ମୁଁ ତୁମ ଉପରେ ଅତ୍ୟନ୍ତ ପ୍ରୀତ। ତୁମେ ନିଜର କର୍ତ୍ତବ୍ୟ ଠିକ୍ ଭାବେ ସମ୍ପାଦନ କରିପାରିଛ। ତୁମ ପାଇଁ ମୁଁ ଗର୍ବିତ। ତୁମେ ଗୋଟିଏ କାମ କର। ପାଖରେ କିଛି ଔଷଧ ରଖିଥାଅ। ଗୁରୁତର ଆହତ ସୈନିକମାନଙ୍କ କ୍ଷତ ସ୍ଥାନରେ ଲଗାଇ ସେମାନଙ୍କର ସେବା କରିବ।"

ଗୁରୁଜୀଙ୍କଠାରୁ ଏପରି କଥା ଶୁଣି ଅଭିଯୋଗକାରୀ ଶିଖ୍ ସୈନିକଜଣକ ଲାଜରେ ସେ ସ୍ଥାନ ଛାଡ଼ି ଚାଲିଗଲେ। ସତରେ ପିଲାଏ, ନିଃସହାୟର ସେବା କଲାବେଳେ ଶତ୍ରୁ ବା ମିତ୍ର ବିଚାର ନ କରି ସେବା କରିଯିବା ପ୍ରକୃତ ମାନବ ଧର୍ମ।

*ବରପାଲି, ବରଗଡ଼- ୭୬୮୦୨୮* ✲✲



# ସର୍ଦ୍ଦି ଓ ଥଣ୍ଡା

ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ

ସର୍ଦ୍ଦି ଓ ଥଣ୍ଡା ଏକ ଅତି ସାଧାରଣ ରୋଗ। ଏହା ଏତେ ସାଧାରଣ ଯେ ଇଂରାଜୀରେ ଏହାକୁ 'କମନ୍ କୋଲ୍ଡ' ବୋଲି କୁହାଯାଏ। ପିଲାଠାରୁ ବୁଢ଼ା ପର୍ଯ୍ୟନ୍ତ ସମସ୍ତେ ଏହି ରୋଗ ଭୋଗିଥା'ନ୍ତି। ତେବେ ବଡ଼ମାନଙ୍କର ଅପେକ୍ଷା ପିଲାମାନେ ଏହି ରୋଗରେ ଅଧିକ ଆକ୍ରାନ୍ତ ହୋଇଥାନ୍ତି। ସାରା ପୃଥିବୀରେ ଏମିତି କେହି ଲୋକ ନ ଥିବେ, ଯେ କି ତାଙ୍କ ଜୀବନକାଳ ଭିତରେ ଥରେ ହେଲେ ସର୍ଦ୍ଦିରୋଗ ଭୋଗି ନ ଥିବେ। ବର୍ଷର ଯେ କୌଣସି ସମୟରେ ସର୍ଦ୍ଦିରୋଗ ହୋଇପାରେ। ତେବେ ଖରାଦିନ ଅପେକ୍ଷା ବର୍ଷାଦିନେ ଓ ଶୀତଦିନେ ଏହା ଅଧିକ ହୋଇଥାଏ। କାଳୁଆ ବା ସନ୍ତସନ୍ତିଆ ଜାଗାରେ ରହିଥିବା ପିଲାମାନେ ଏହାର ଅଧିକ ଶିକାର ହୋଇଥାନ୍ତି।

## କାହିଁକି ହୁଏ:

ସର୍ଦ୍ଦି ହେଉଛି ଏକ ଭୂତାଣୁଜନିତ ରୋଗ। କିନ୍ତୁ ଗୋଟିଏ ପ୍ରକାର ଭୂତାଣୁ ଯୋଗୁଁ ଏହା ହୁଏନାହିଁ। ପ୍ରାୟ ଆଠ ଦଶ ପ୍ରକାରର ଭୂତାଣୁ ଯୋଗୁଁ ସର୍ଦ୍ଦିରୋଗ ହୋଇଥାଏ। ତେଣୁ ଥରେ ସର୍ଦ୍ଦି ହେଲେ, ସହଜରେ ଭଲ ହୁଏନାହିଁ। ପୁଣି ଏହି ଭୂତାଣୁଗୁଡ଼ିକର ଏଭଳି ଗୁଣ ଯେ ସୁବିଧା ପାଇଲେ ଏମାନେ ବାରମ୍ବାର ରୋଗ ସୃଷ୍ଟି କରିଥାନ୍ତି। ତେଣୁ ଜଣଜଣଙ୍କଠାରେ ବାରମ୍ବାର ସର୍ଦ୍ଦିରୋଗ ଦେଖାଯାଏ। ଥଣ୍ଡାରେ ବୁଲିଲେ, ବର୍ଷାରେ ଓଦା ହେଲେ, ଥଣ୍ଡା ପାନୀୟ ବା ଆଇସ୍‌କ୍ରିମ୍ ଇତ୍ୟାଦି ଖାଇଲେ ଭୂତାଣୁମାନେ ସହଜରେ ଆକ୍ରମଣ କରିଥାନ୍ତି। ହଠାତ୍ ପାଗ ପରିବର୍ତ୍ତନ ହେଲେ, ମେଘୁଆ ପାଗ ହେଲେ କିମ୍ବା ଧୂଳିଝଡ଼ ହେଲେ ମଧ୍ୟ ଭୂତାଣୁମାନେ ସକ୍ରିୟ ହୋଇ ଆକ୍ରମଣ କରିଥାନ୍ତି।

କେତେକ ଲୋକ ଭାବନ୍ତି ଯେ ସର୍ଦ୍ଦିରୋଗ ଯାହା ଇନ୍‌ଫ୍ଲୁଏନ୍‌ଜା ସେଇଆ; କିନ୍ତୁ ଏହା ଠିକ୍ ନୁହେଁ। ଅବଶ୍ୟ ଇନ୍‌ଫ୍ଲୁଏନ୍‌ଜା ଏକପ୍ରକାର ଭୂତାଣୁଜନିତ ରୋଗ। କିନ୍ତୁ ଉଭୟଙ୍କ ପାଇଁ ଅଲଗା ଅଲଗା ଭୂତାଣୁ ରହିଥାଏ। ଉଭୟଙ୍କ କ୍ଷେତ୍ରରେ ଏକା ଲକ୍ଷଣ ସବୁ ପ୍ରକାଶ ପାଉଥିବାରୁ ଲୋକମାନଙ୍କ ମନରେ ଏଭଳି ଧାରଣା ରହିଥାଏ।

## କେମିତି ବ୍ୟାପେ:

ସର୍ଦ୍ଦି ହେଉଛି ଏକ ଡିଆଁରୋଗ। ଏହା ଏକ ଶ୍ୱାସନଳୀ ସମ୍ପର୍କିତ ରୋଗ ହୋଇଥିବାରୁ ରୋଗୀର ନିଃଶ୍ୱାସ, କାଶ, ଛିଙ୍କ ଇତ୍ୟାଦିରୁ ଭୂତାଣୁମାନେ ବାହାରି ବାୟୁ ମାଧ୍ୟମରେ ସୁସ୍ଥଲୋକ ଦେହରେ ପ୍ରବେଶ କରି ରୋଗ ସୃଷ୍ଟି କରିଥାନ୍ତି। ପୁଣି ରୋଗୀ ବ୍ୟବହାର କରୁଥିବା ଲୁଗାପଟା ତଥା ଆସବାବପତ୍ର ସଂସ୍ପର୍ଶରେ ଆସିଲେ ମଧ୍ୟ ପରୋକ୍ଷରେ ଏହି ରୋଗ ସଂକ୍ରମିତ ହୋଇଥାଏ।

**କ'ଣ ହୁଏ:**

ସର୍ଦ୍ଦି ହେଲେ ପ୍ରଥମେ ଦେହହାତ କସ୍‌ମସ୍ ଲାଗେ। ଦେହରେ ଜର ନ ଥାଇ ମଧ୍ୟ ଜର ହେଲା ପରି ବୋଧହୁଏ। ଶେଷଆଡ଼କୁ ହୁଏତ ସାମାନ୍ୟ ଜର ଆସିପାରେ। ନାକ ଭିତର କୁଣ୍ଡାଇ ହୁଏ । ନାକରୁ କଞ୍ଚାପାଣି ନିଗିଡ଼ି ପଡ଼େ। ନାକକୁ ବାରମ୍ବାର ପୋଛିବା ଦ୍ୱାରା ନାକପୁଡ଼ା ନାଲି ପଡ଼ି ଫୁଲିଯାଏ। ବେଶିଦିନ ଲାଗି ରହିଲେ ନାକପୁଡ଼ା ତଳ ଖଣ୍ଡିଆ ହୋଇ ଘା' ହୋଇଯାଏ। ବାରମ୍ବାର ଛିଙ୍କ ହୁଏ। ଆଖିରୁ ମଧ୍ୟ ପାଣି ଗଡ଼େ ଓ ଆଖି ନାଲି ଦେଖାଯାଏ। ତଣ୍ଟି ଭିତର ଗତଗତ ହୋଇ ତଣ୍ଟି ପଡ଼ିଯାଏ। ମୁଣ୍ଡ ଭାରି ଭାରି ଲାଗେ ଓ ବିନ୍ଧା ହୁଏ। ଦିନେ ଦୁଇଦିନ ବେଳକୁ ନାକ ଭିତରରେ ବହଳିଆ ସିଂଘାଣି ଜମିଯାଏ ଓ କାଶ ହୋଇ କାଶରେ ବାହାରେ। ବେଳେବେଳେ ସଂକ୍ରମିତ ହୋଇ କାନ ପାଚେ ଓ କାନରୁ ପୂଜ ବାହାରେ। ସାଇନୋସାଇଟିସ୍, ବ୍ରୋଙ୍କାଇଟିସ୍ ଓ ନିମୋନିଆ ଭଳି ଜଟିଳତା ମଧ୍ୟ ସୃଷ୍ଟି ହୋଇପାରେ।

**କ'ଣ କରିବ:**

ସର୍ଦ୍ଦି ଏକ ଭୂତାଣୁଜନିତ ରୋଗ ହୋଇଥିବାରୁ ଏଥିପାଇଁ କୌଣସି ଔଷଧ ନାହିଁ। ଏହା ପ୍ରାୟତଃ ଆପେ ଆପେ ଭଲ ହୋଇଯାଏ। ସେଥିପାଇଁ ମଜାରେ କୁହାଯାଏ, "ସର୍ଦ୍ଦିକୁ ଚିକିତ୍ସା କଲେ ସାତ ଦିନରେ ଭଲ ହୁଏ, ଆଉ ଚିକିତ୍ସା ନ କଲେ ଭଲ ହେବାକୁ ଲାଗେ ଏକ ସପ୍ତାହ।" କେତେକ ଘରୋଇ ଉପଚାର ହିଁ ସର୍ଦ୍ଦିରୋଗ ଉପଶମ ପାଇଁ ସାହାଯ୍ୟ କରିଥାଏ।

- ସର୍ଦ୍ଦି ହେଲେ ସମ୍ପୂର୍ଣ୍ଣ ବିଶ୍ରାମ ନିଅ।
- ନାକବାଟେ ଫୁଟନ୍ତା ପାଣିର ବାମ୍ଫଆଣି ନିଅ। ଏହି ପାଣିରେ ଟିଙ୍କଚର ବେଞ୍ଜିନ୍, ଅମୃତାଞ୍ଜନ କିମ୍ବା ବିଶଲ୍ୟକରଣୀ ଇତ୍ୟାଦି ପକାଇ ପାରିଲେ ଭଲ।
- ଦିନକୁ ୪-୫ଥର ଉଷୁମ୍ ଲୁଣ ପାଣିକୁ ତଣ୍ଟିରେ ରଖି କୁଳି କର।
- ପ୍ରଚୁର ପାଣି ପିଅ। ଲେମ୍ବୁ ଓ କମଳା ରସ ଯେତେ ପିଇଲେ ଭଲ।
- ସୋରିଷ ତେଲ ଓ ଲୁଣକୁ ଫୁଟାଇ ହାତ ଓ ପାଦରେ ମାଲିସ୍ କର।
- ନାକପୁଡ଼ା ଓ ତଣ୍ଟିରେ ଭିକ୍ସ୍ ଭେପୋରବ୍‌ର ପ୍ରଲେପ ଦିଅ।
- ପ୍ରତିଦିନ ଅଭ୍ୟାସ କରି କିଛି ମହୁ ଓ ଛଅ ସାତଟି ତାଜା ତୁଳସୀ ପତ୍ର ଖାଅ।
- ପୁଷ୍ଟିକର ଖାଦ୍ୟ ଖାଅ। ସର୍ଦ୍ଦି ପାଇଁ କୌଣସି ଖାଦ୍ୟ ବାରଣ କରାଯାଏ ନାହିଁ। ପିଜୁଳି, ଅଙ୍ଗୁର, କମଳା ପରି ଫଳ ଅଧିକ ପରିମାଣରେ ଖାଅ। ପଇଡ଼ପାଣି ପିଅ। ଯଦି ସମ୍ଭବ, ପରିବା ସୁପ୍ ଓ ଚିକେନ୍ ସୁପ୍ ପିଅ।
- ଛିଙ୍କ ଓ ନାକ ଗତଗତ କମାଇବା ପାଇଁ ସେଟ୍ରିଜିନ୍ ଜାତୀୟ ଔଷଧ ଖାଅ।
- ଜ୍ୱର ଓ ମୁଣ୍ଡବିନ୍ଧା ପାଇଁ ପାରାସିଟାମଲ୍ ବଟିକା ମଧ୍ୟ ଖାଇପାର। ଭିଟାମିନ୍ 'ସି' ବଟିକା ସର୍ଦ୍ଦି ପାଇଁ ଭଲ କାମ ଦିଏ। ତେବେ ଯେ କୌଣସି ବଟିକାର ମାତ୍ରା ବିଷୟରେ ଡାକ୍ତରଙ୍କଠାରୁ ବୁଝିନିଅ।

**ସାବଧାନତା:**

ନିଜେ ସାବଧାନ ରହିଥିଲେ ସର୍ଦ୍ଦିରୋଗ ପାଖ ପଶିପାରେ ନାହିଁ। ଏଥିପାଇଁ--

- ସର୍ଦ୍ଦିରୋଗୀ ସହିତ ମିଳାମିଶା କରନାହିଁ ଓ ତା'ଠାରୁ ସବୁବେଳେ ଦୂରରେ ରହ। ତା'ର କୌଣସି

ଲୁଗାପଟା ଓ ଆସବାବପତ୍ରକୁ ବ୍ୟବହାର କରନାହିଁ।

- ନିଜକୁ ସର୍ଦ୍ଦି ହୋଇଥିଲେ ଏଣେତେଣେ ନାକ ପୋଛ ନାହିଁ କିମ୍ବା ଛେପଖଙ୍କାର ପକାଅ ନାହିଁ । କାଶିଲାବେଳେ ଓ ଛିଙ୍କିଲାବେଳେ ମୁହଁ ଓ ନାକରେ ରୁମାଲ ଦେଇ ମୁହଁ ତଳକୁ କରି କାଶ ଓ ଛିଙ୍କ।
- ଥଣ୍ଡାରେ ବୁଲ ନାହିଁ । ଶୀତଦିନେ ବାହାରକୁ ବାହାରିବାବେଳେ ସ୍ୱେଟର, ଟୋପି, ମଫଲର, ଯୋତା, ମୋଜା ଆଦି ବ୍ୟବହାର କର।
- ଅଧିକ ଗାଧାଅ ନାହିଁ। ଅଯଥାରେ ବର୍ଷାରେ ଓଦା ହୁଅନାହିଁ । ଦୈବାତ୍ ଓଦା ହୋଇଗଲେ, ଓଦା ପୋଷାକକୁ ଅଧିକ ସମୟ ଦେହରେ ରଖନାହିଁ। ତୁରନ୍ତ ଶୁଖିଲା ତଉଲିଆରେ ଦେହକୁ ପୋଛି ଶୁଖାଇଦିଅ।
- ଥଣ୍ଡାପାଣି ପିଅନାହିଁ କିମ୍ବା ଆଇସ୍କ୍ରିମ୍ ଖାଅନାହିଁ। ଥଣ୍ଡା ମୃଦୁପାନୀୟ ମଧ୍ୟ ପିଅନାହିଁ।
- ବିଡ଼ି, ସିଗାରେଟ୍ ପରି ମାଦକଦ୍ରବ୍ୟ ବ୍ୟବହାର କରନାହିଁ।
- ସର୍ଦ୍ଦି ସାତ ଦିନରୁ ଅଧିକ ସମୟ ଲାଗି ରହିଲେ ଡାକ୍ତରଙ୍କ ସହିତ ପରାମର୍ଶ କର।
- ସର୍ଦ୍ଦି ଏକ ନିରୀହ ରୋଗ। ଏଥିପାଇଁ ବିଚଳିତ ହୁଅନାହିଁ।

*ନିମନ୍ତ୍ରଣ, ୮୯-ଶକ୍ତିନଗର, ଲିଙ୍କ୍ ରୋଡ୍, କଟକ-୧୨* ✲

---

**ଅଛି-ନାହିଁର ଉତ୍ତର--** ୧-ବନ୍ସିର ଅଗ୍ରଭାଗ ଭିନ୍ନ, ୨-ପକେଟ୍ ନାହିଁ, ୩-ବତକ ଗୋଡ଼ ତଳେ ଘାସବୁଦା ନାହିଁ, ୪-ବତକ ଧରିଥିବା ବାଡ଼ିର ବେଣ୍ଟ ଭିନ୍ନ, ୫-ବତକର ଚଷମା ନାହିଁ, ୬-ବତକର ଜୋତା ଭିନ୍ନ, ୭-ବତକର ଜାମା ଗାର ନାହିଁ ।

# ଅଧିକାର

ଶ୍ରୀ ରମାକାନ୍ତ ବେହେରା



ସ୍ରଷ୍ଟାଙ୍କ ସୃଷ୍ଟିରେ ଜନମ ନେଇଛି
ଅଧିକାର ମୋର କେତେ
ଛଡ଼ାଇ ନିଅନି ମୋ ପାଖରୁ କେହି
କହୁଛି ମୁଁ ଯୋଡ଼ ହାତେ ।
ଅଧିକାର ମୋର ନାଚିବି ଗାଇବି
ଖେଳିବି, ପଢ଼ିବି ପାଠ
ଏତିକିରୁ ମତେ ବଞ୍ଚିତ କରନି
କରନି କେବେ ଆକଟ ।
ଶ୍ରମିକଟେ କରି ମୋ ଚଲାପଥରେ
ବୁଣନାହିଁ ତୁମେ କଣ୍ଟା
ଜାଣିଥାଅ ପରା ସବୁଦିନ ପାଇଁ
ଜୀବନ ହେବ ମୋ ଖଟା ।
ଅଧିକାର ମୋର ଅନ୍ୟାୟ ବିରୁଦ୍ଧେ
ଧରିବାକୁ ତରୁଆଲ
ଛଡ଼ାଇ ନିଅନି ସେ ତରୁଆଲକୁ
ଆଖି କରି ତୁମେ ନାଲ ।
ନିରେଖିକି ଥରେ ଦେଖ ମୋ ଓଠର
ହସ ଦେଖି କେଉଁପରି
ତଳେ ହସୁଅଛି ମାଆ ବସୁମତୀ
ଉପରେ ସରଗପୁରୀ ।

*ଭଣ୍ଡାରୀ ପୋଖରୀ, ଭଦ୍ରକ- ୭୫୬୧୨୦* ✲✲

# ନିଆଁ ଆଉଟାରେ ଖାଣ୍ଟି-ସୁନା ଝଟକେ

ଶ୍ରୀ ଜେନାମଣି ଲକ୍ଷ୍ମୀକାନ୍ତ

ବୈଦିକ ଯୁଗର ବେଦବିଜ୍ଞାନୀ ମହର୍ଷି ଯାଜ୍ଞବଳକ୍ୟ ସାଂସାରିକ ଜୀବନକୁ ପରିହାର କରି ଆରଣ୍ୟକ ଜୀବନକୁ ଅଧିକ ତପସ୍ୟା ଓ ସିଦ୍ଧିଲାଭର ମାର୍ଗ ରୂପେ ନିଷ୍ପତ୍ତି କଲା ଉତ୍ତାରୁ ନିଜର ଦୁଇ ପତ୍ନୀଙ୍କୁ ଡାକି କହିଲେ, "ପ୍ରିୟତମେ! ମୁଁ ଏବେ ପାରିବାରିକ ଜୀବନକୁ ପରିହାର କରି ସନ୍ନ୍ୟାସ ଜୀବନକୁ ଆଦରି ନେବାକୁ ଯାଉଛି। ମୁଁ ଚାହେଁନି ତମେ ଦିହେଁ ମୋ ପ୍ରସ୍ଥାନ ଉତ୍ତାରୁ ଯେଭଳି ଭୁଲ୍‌ରେ କେବେ କଳିତକରାଳ ନ କର । ମୋର ଯାହା କିଛି ଅଛି, ତାକୁ ମୁଁ ତୁମ ଦୁହିଁଙ୍କ ମଧ୍ୟରେ ବାଣ୍ଟି ଦେଉଛି। ଗୃହ ଆସବାବ, ଅର୍ଥ, ସ୍ଥାବର, ଅସ୍ଥାବର ସବୁ କିଛି ଦୁଇଭାଗ ହେବ ଏବଂ ତମେ ଦୁହେଁ ହିଁ ହେବ ସେ ସବୁର ମାଲିକାଣୀ। ଏଥିରେ ଖୁସି ତ ?

ଯାଜ୍ଞବଳକ୍ୟଙ୍କ ପତ୍ନୀ କାତ୍ୟାୟିନୀ ସଙ୍ଗେ ସଙ୍ଗେ ଏଥିରେ ସହମତ ହୋଇଗଲେ। କିନ୍ତୁ ଅନ୍ୟ ପତ୍ନୀ ପ୍ରିୟତମା ମୈତ୍ରେୟୀ ଖୁବ୍ ଗମ୍ଭୀର ଭାବେ ବିଚାରି ବସିଲେ। ଏସବୁ ପାର୍ଥିବ ସମ୍ପତ୍ତି ବିନା ଆଉ କ'ଣ ଅଛି, ଯାହାକୁ ନିର୍ବାସନରେ ଯାଉଥିବା ପ୍ରିୟ ସ୍ୱାମୀଙ୍କ ଅନୁପସ୍ଥିତିକୁ ବିମୂର୍ତ୍ତ କରି ଅପାର ଆନନ୍ଦ ପ୍ରଦାନରେ ସମର୍ଥ ହେବ ? ଏଥର ମୈତ୍ରେୟୀ ପୁଛିଲେ, "ପୂଜାସ୍ପଦ ସ୍ୱାମୀ ! ଆପଣ ଏଇ ପାରିବାରିକ ଜୀବନକୁ ପରିହାର କରି ଯେଉଁ ମୁକ୍ତି ଏବଂ ଆନନ୍ଦ ପାଇଁ ସନ୍ନ୍ୟାସ ଜୀବନକୁ ଆପଣେଇବା ପାଇଁ ତତ୍ପର ଓ ବଦ୍ଧପରିକର, ତାହା କ'ଣ ପାରିବାରିକ ସୁଖଶାନ୍ତିଠାରୁ ଅଧିକ ଉପଭୋଗୀ, ରୁଚିର ଓ ଶ୍ଳାଘ୍ୟ ସତରେ? ପ୍ରଜ୍ଞାପୁରୁଷ ଯାଜ୍ଞବଳକ୍ୟ କହିଲେ, "ପ୍ରିୟତମେ ମୈତ୍ରେୟୀ ! ସକଳ ସୁଖଶାନ୍ତିଠାରୁ ସେହି ଇପସିତ ଶାନ୍ତି ଓ ପରମାନନ୍ଦ ସବୁଠାରୁ ଅମୃତ ଅନୁଭବରେ ପରିପ୍ଲୁତ। ଏହା ମଧୁସଦୃଶ। ଏ ପୃଥିବୀ ନଶ୍ୱର। ଏଠି ଧନ, ଯୌବନ, ମାୟା, ବନ୍ଧନ ସବୁ କିଛି ଅଳୀକ ଏବଂବିଧ ସକଳ ଆନନ୍ଦ କ୍ଷଣିକ। ଏଣୁ ମୋ ଜୀବନର ଅନ୍ତିମ ସମୟକୁ ସେହି ସ୍ୱର୍ଗୀୟ ପ୍ରଶାନ୍ତି ଓ ପରିତୃପ୍ତି ଲାଭ ନିମିତ୍ତ ତପଶ୍ଚର୍ଯ୍ୟାରେ ଅନୁବନ୍ଧିତ କରିବା ପାଇଁ ମୁଁ ଆଜି ପ୍ରତିଜ୍ଞାବଦ୍ଧ।"

ଏଥର ମୈତ୍ରେୟୀଙ୍କର ପ୍ରଶ୍ନ ଥିଲା, " ସ୍ୱାମୀ ! ମୁଁ ଯଦି ପୃଥିବୀରେ ସକଳ ଧନରତ୍ନ ଓ ସମ୍ପତ୍ତିର ଉତ୍ତରାଧିକାରିଣୀ ହୋଇଯାଏ, ତେବେ ମୁଁ କଣ ମୃତ୍ୟୁର ଭୟମୁକ୍ତ ହୋଇ ଚିରକାଳ ଅମର ରହିପାରିବି-- କୁହନ୍ତୁ ତ ?" ଯାଜ୍ଞବଳକ୍ୟ କହିଲେ, "ନାଁ ମୈତ୍ରେୟୀ ! ତାହା ସମ୍ଭବ ନୁହେଁ । ପାର୍ଥିବ ସମ୍ପଦ କେବଳ ପାର୍ଥିବ ସୁଖଶାନ୍ତି



ଦେଇପାରେ । ତାହା କେବେ ତୁମକୁ ସ୍ୱର୍ଗୀୟ ପ୍ରଶାନ୍ତି ବା ଦିବ୍ୟ ଅମରତ୍ୱ ଦେଇପାରିବ ନାହିଁ ।" ପ୍ରଜ୍ଞାବତୀ ପତ୍ନୀ ମୈତ୍ରେୟୀଙ୍କ ପ୍ରତ୍ୟୁତ୍ତର ଥିଲା , "ତେବେ ସ୍ୱାମୀ ! ମୋତେ ଆପଣ ଏହି ନଶ୍ୱର ସମ୍ପଦ ଓ ବୈଭବରେ ଭାରାକ୍ରାନ୍ତ କରିବା ପାଇଁ କିଆଁ ବିଚାରୁ-ଛନ୍ତି ? ମୁଁ ଅନ୍ଧାରରୁ ଆଲୋକ ଓ ଅସତ୍ୟରୁ ସତ୍ୟର ସନ୍ଧାନରେ 'ମୃତ୍ୟୁ ଓ ଜନ୍ମ'ର ଏହି ଦୁର୍ଦ୍ଧାନ୍ତ ଚକ୍ରବ୍ୟୁହ ତଥା ଘୂର୍ଣ୍ଣିବଳୟରୁ ମୁକୁଳିବାକୁ ଚାହେଁ ।" ଯାଜ୍ଞବଳକ୍ୟ କହିଥିଲେ , "ପ୍ରିୟତମେ ! ମୁଁ ପ୍ରୀତ ହେଲି ତମର ପ୍ରଜ୍ଞାପାରମିତା ପ୍ରତିଭା ଘେନି । ଆସ ମୋ କଡ଼ରେ ବସ । ପ୍ରକୃତ ଜ୍ଞାନ କ'ଣ , ତାହା ତୁମକୁ ଅବଗତ କରାଇବି ଏବଂ ତୁମ ଆତ୍ମା ଚୂଡ଼ାନ୍ତ ମୋକ୍ଷଲାଭ ପାଇଁ ମାର୍ଗ ପ୍ରଦର୍ଶନ କରିବି ମଧ୍ୟ । ପାର୍ଥିବ ସଂଶୟ ଓ ଯନ୍ତ୍ରଣା ଆଉ କେବେ ତୁମକୁ ବିଘ୍ନିତ ଅଥବା ବିଭ୍ରାନ୍ତ କରିବନି ।"

ଯାଜ୍ଞବଳକ୍ୟଙ୍କ କଥା ସତ୍ୟ ହେଲା । ମୈତ୍ରେୟୀଙ୍କ ତପଶ୍ଚର୍ଯ୍ୟା ସାକାର ହେଲା । ସତ୍ୟ , ଜ୍ଞାନ ଆହରଣ ଉତ୍ତାରୁ ମୈତ୍ରେୟୀ ମୋକ୍ଷଲାଭ କରିଥିଲେ ଅଚିରେ ।

ଜ୍ଞାନାର୍ଜନ , ସତ୍ୟ ଏବଂ ପ୍ରକୃତ ଜ୍ଞାନଲାଭ ଏକା କଥା ନୁହେଁ । ଆମେ ଅନେକ ପଲ୍ଲବଗ୍ରାହୀ ଯାହା ଜାଣୁ , ତାହା ସମ୍ୟକ୍ । ଯାହା ଜାଣିବାର ଅଛି , ତାହା ଅସୀମ ଓ ବ୍ୟାପକ । ପ୍ରକୃତ ଜ୍ଞାନ ହିଁ ମଣିଷ/ନାରୀକୁ ପରିପୂର୍ଣ୍ଣତାରେ ଅଳଂକୃତ କରିଥାଏ । ପ୍ରକୃତ ସତ୍ୟ ଜ୍ଞାନର ଉଦ୍ଦେଶ୍ୟ ହେଉଛି-- ଆତ୍ମା ଓ ପରମାତ୍ମାର ସମ୍ମିଳିତ ସାନ୍ନିଧ୍ୟ ଲାଭ , ଯାହା ଦିବ୍ୟାନନ୍ଦରେ ପ୍ରତିଷ୍ଠିତ ।

*ପ୍ରଜ୍ଞାଭାରତୀ , ୧୯୨ ବି ଏଞ୍ଜେଲିକା ଏଭିନିୟୁ , କେଦାରଗୌରୀ ବିହାର , ଲଇସ ରୋଡ଼ , ଭୁବନେଶ୍ୱର- ୧୪*

**

# ଏହି ଶପଥ ନେଲେ

ଶ୍ରୀ ପ୍ରଭାକର ମହାପାତ୍ର

ସହଳଉଠା ମନ ଫୁରତି
ସକାଳ ବାଆ ଭଲ
ମୁହଁ ପଖାଳି ଶୌଚ କରିଲେ
ନ ହେବ କଲବଲ ।
ନିତ୍ୟ କରମ ଠିକ୍ ସମୟ
ଥିବଟି ସଦା ଜଗି
ଦେହ ରହିବ ସଂସାର ଭଲେ
କେବେ ନ ହେବ ଭୋଗୀ ।
କେବେ ଏସିଡ୍ ଛାତି କୁହୁଳି
ନ ହେବ ଅମ୍ଳ ମଣି
ସକାଳୁ ଉଠି ଦୁଇ ଗିଲାସ
ନିଷ୍ଠେ ପିଇବ ପାଣି ।
ବ୍ୟାୟାମ ଜାରି ସକାଳେ ସଞ୍ଜେ
ଅଭ୍ୟାସ ରଖ ନିତି
ରୋଗ ଘୁଞ୍ଚିବ ସୁସ୍ଥ ରହିବ
ଚଞ୍ଚଳ ହେବ ଅତି ।
ଶିକ୍ଷିତ , ମୂର୍ଖ ଜ୍ଞାନୀ , ଅଜ୍ଞାନ
ମନରେ ବେଳେ ହେଜ
ଦେଶୀବାବୁ ଓ ଇଂରାଜୀ ଠାଣି
ଜଣାପଡ଼ଇ ଆଜ ।
ରାଇଜ ଛାଡ଼ି ଦୂର ଦେଶରେ
ନେଲେ ବିଦେଶୀ ଦୀକ୍ଷା
ମାତୃଭାଷାର ବିଳାପ ଶୁଣି
କିଏ କରିବ ରକ୍ଷା ?
ମା'ର ଭାଷା , ମା'ର ଆଶା
ପୂରଣ କର ପିଲେ
ଭାଷାକୁ ରକ୍ଷା କରିବା ଆମେ
ଏହି ଶପଥ ନେଲେ ।

*ନୂଆପଡ଼ା , ରେମୁଣା*

**

# ଜାତୀୟ ଚଳଚ୍ଚିତ୍ର ସମ୍ମାନରେ ଦୁଇ ଓଡ଼ିଆ 'ଲିପିକା' ଓ 'ନିହାର'

ଶ୍ରୀ କାଞ୍ଚିନାରାୟଣ ମହାନ୍ତି

ବର୍ଷକୁ ବର୍ଷ ଓଡ଼ିଆ ଚଳଚ୍ଚିତ୍ରର ସଂଖ୍ୟା ବଢ଼ି ବଢ଼ି ଚାଲିଥିଲେ ମଧ୍ୟ ଯେଉଁ କାରଣରୁ ଏହାକୁ ରାଜ୍ୟ ସରକାରୀ ସ୍ତରରେ ଶ୍ରେଷ୍ଠ ଚଳଚ୍ଚିତ୍ର ସମ୍ମାନ ପାଇଁ, ଶ୍ରେଷ୍ଠ ନିର୍ଦ୍ଦେଶନା ଓ ଶ୍ରେଷ୍ଠ ଚଳଚ୍ଚିତ୍ର ପାଇଁ ବିବେଚନା ଭିତରକୁ ଅଣାଗଲା ନାହିଁ, ତାହା ଆମ ବିଜ୍ଞ ପାଠକ ଓ ସଚେତନ ସିନେ ଦର୍ଶକମାନଙ୍କୁ ସ୍ପଷ୍ଟ ଭାବେ ଜଣା।

ଚୀନ୍‌ର ସାମଗ୍ରୀ ଭାରତରେ ବହୁଳ ବ୍ୟବସାୟ କରେ। କାରଣ ଏହା ଶସ୍ତା, ଖରାପ ହେଲେ ଫୋପାଡ଼ିଦେଲେ ଦୁଃଖ ନାହିଁ। ଆମ ସିନେ ନିର୍ମାଣକର୍ତ୍ତା-ମାନଙ୍କର ଆଦର୍ଶବାଦୀ, ଜାତୀୟତା ମନୋଭାବ ବା ଗୁଣାତ୍ମକ ଛବିଟିଏ ତିଆରି ନିଜ ରାଜ୍ୟର ସୃଜନ-ଶୀଳତାର ପରିଚୟକୁ ଅନ୍ୟ ଦେଶ ତଥା ବିଶ୍ୱ ସମ୍ମୁଖରେ ପ୍ରଦର୍ଶନ କରିବାର ସତ୍‌ସାହସ ମରିହଜି ଯାଇଛି। ଆମେ ଅନ୍ୟ ଭାଷାଭାଷୀ ଛବିକୁ ଆଣି ଅନୁରୂପ ଢଙ୍ଗରେ ଆମ ଭାଷାରେ ରଙ୍ଗେଇ, ବ୍ୟବସାୟ କରି ପଇସା କିଛି ଖଟାଉଛୁ ଏବଂ ପଇସା ଉଠିଗଲେ କାମ ଶେଷ। ପଇସା ପାଇଁ ଛବି ନିର୍ମାଣ କରି ଚଳଚ୍ଚିତ୍ର ଶିଳ୍ପକୁ ଆଗେଇ ନେଉଛୁ। ବୋଧହୁଏ ସେଇଥିପାଇଁ ଅଭିଜ୍ଞ ଅଭିନେତା, ସଙ୍ଗୀତଜ୍ଞ ଓ ନିର୍ଦ୍ଦେଶକମାନେ ମଧ୍ୟ ଧୀରେ ଧୀରେ ଅଲୋଡ଼ା ହୋଇଗଲେଣି।

ସୁଖର କଥା, ବଲାଙ୍ଗିର ମାଟିର ପୁଅ ଆମ ଓଡ଼ିଶାର ଗୌରବ ସବ୍ୟସାଚୀ ମହାପାତ୍ର ତାଙ୍କ ବାପାଙ୍କର କାହାଣୀକୁ ନେଇ 'ଶଳାବୁଢ଼ା' ଛବିଟି ନିର୍ମାଣ କଲେ। ତାହା ଏବେ ଆନ୍ତର୍ଜାତୀୟ ଚଳଚ୍ଚିତ୍ର ସ୍ତରରେ ଚର୍ଚ୍ଚିତ ଓ ପୁରସ୍କୃତ। ଓଡ଼ିଶାର କଳାକାର, ଓଡ଼ିଶାର ଲୋକକାବ୍ୟ, ଜୀବନପ୍ରବାହକୁ ନେଇ ସେ ସବୁବେଳେ ପରୀକ୍ଷାନିରୀକ୍ଷା ଚଳାଇଛନ୍ତି। ପ୍ରତ୍ୟେକ ଛବି ତାଙ୍କର ଓଡ଼ିଆ ମାଟି, ପାଣି, ପବନରେ ଗଢ଼ା। ସାମାନ୍ୟ କଳାତ୍ମକ ଉନ୍ମେଷ ଦେଖିଲେ ତାକୁ ସ୍ୱାଗତ କରି ସୁଯୋଗ ଦେଇଥାନ୍ତି। 'ଭୁଖା', 'ସବୁ ମାୟାରେ ବାୟା' ତାଙ୍କର ଶ୍ରେଷ୍ଠତା ପ୍ରମାଣ କରିଥିଲା।





ନିକଟରେ ୨୧ତମ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ଘୋଷଣା କରାଯାଇଛି। ଆନନ୍ଦର କଥା, ଓଡ଼ିଶାରେ ଯେଉଁ ଦୁଇଜଣ ଏହି ଅବସରରେ ପୁରସ୍କୃତ ହେବାର ଗୌରବ ଅର୍ଜନ କରିଛନ୍ତି, ସେମାନେ ହେଲେ 'ଲିପିକା ସିଂହ' ଏବଂ 'ନିହାର ସାମଲ'। ଲିପିକା ୨୦୧୨ ମସିହାରେ 'ଏକ ଗଛ, ଏକ ମଣିଷ' ଓ 'ଏକ ସମୁଦ୍ର' ପାଇଁ ଜାତୀୟ ପୁରସ୍କାର



ପାଇଥିଲେ। ମରାଠୀ ଚଳଚ୍ଚିତ୍ରରେ 'ଗାରୁଡ଼' ପାଇଁ ମଧ୍ୟ ୫୭ତମ ଜାତୀୟ ପୁରସ୍କାର ଲାଭ କରିଥିଲେ। ୬୧ତମ ଜାତୀୟ ଚଳଚ୍ଚିତ୍ର ପୁରସ୍କାର ପାଇଁ ତାଙ୍କ ନିର୍ଦ୍ଦେଶିତ ଛବି 'କଙ୍କି ଓ ସାପ'' ଶ୍ରେଷ୍ଠ ଶବ୍ଦଗ୍ରହଣ ବିଭାଗ ପାଇଁ ସମ୍ମାନିତ ହେବ।




'ମାଡ୍ରାସ୍ କାଫେ'ର ଏକ ଦୃଶ୍ୟ

ଲିପିକାଙ୍କ ପରି ନିହାର ସାମଲ 'ମାଡ୍ରାସ୍ କାଫେ' ବଲିଉଡ୍ ଛବି ପାଇଁ ଶ୍ରେଷ୍ଠ ଶବ୍ଦଗ୍ରହଣକାରୀ ଭାବେ ପୁରସ୍କୃତ ହେବେ।

ଷୋଳମିନିଟ୍ ପାଇଁ ନିର୍ମିତ ଛବିର ନାଁ 'କଙ୍କି ଓ ସାପ'; କିନ୍ତୁ ଏଥିରେ ଆଇମା ଓ ନାତୁଣୀ ମଧ୍ୟରେ ରହିଯାଉଥିବା ସମ୍ପର୍କର ଦୂରତାକୁ ଉପସ୍ଥାପିତ କରାଯାଇଛି। ଏହାର ପାଣ୍ଡୁଲିପି ପ୍ରସ୍ତୁତି, ସମ୍ପାଦନା ଓ ନିର୍ଦ୍ଦେଶନା ନିଜେ ଲିପିକା କରିଛନ୍ତି। ଖରାଛୁଟିରେ ଲିପିକା ତାଙ୍କ ଆଇଙ୍କ ସହିତ ଯେଉଁ ଅନ୍ତରଙ୍ଗ ଆଳାପ କରିଛନ୍ତି, ତାହା ହିଁ ଛବିର କଥାବସ୍ତୁ। 'ଭଏସ୍ କଭର ବିଭାଗ'ର ଶ୍ରେଷ୍ଠତା ପାଇଁ ତାଙ୍କୁ ରଜତ କମଳ ଫଳକ ସହିତ ପଞ୍ଚାବନ ହଜାର ଟଙ୍କାର ଅର୍ଥରାଶି ମିଳିବ।

ଲିପିକା ଏହି ସଫଳତାର ଉତ୍ତରରେ କହନ୍ତି-- ନିଜର ଅନ୍ତର୍ନିହିତ ଇଚ୍ଛାକୁ ଠିକ୍ ଭାବରେ ପରିବେଷଣ କରିପାରିଲେ ତାହା ସବୁରି ମନକୁ ଛୁଇଁଯାଏ। ସବୁ ଛୋଟ ଛୋଟ କଥାରେ କିଛି ମହତ୍ ଉଦ୍ଦେଶ୍ୟ ଛପି ରହିଥାଏ। ବଲିଉଡ୍‌ର ସବୁ ଦକ୍ଷ ଓଡ଼ିଆ ଯୁବକ ସେମାନଙ୍କର ପ୍ରତିଭା ବିଭିନ୍ନ ବିଭାଗରେ ପ୍ରତିପାଦିତ କରିପାରିଛନ୍ତି। ନିହାର ସାମଲଙ୍କ ଭଳି ସାଉଣ୍ଡ୍ ଟେକ୍‌ନୋଲୋଜିରେ ଦକ୍ଷ ଖୁବ୍ କମ୍ ଦେଖାଯାଆନ୍ତି। ସେ ଏଥର ଫିଲ୍ମଫେୟାର୍ ପୁରସ୍କାର ମଧ୍ୟ ପାଇବେ।

**ବଲିଉଡ୍‌ରେ ଓଡ଼ିଆ ସିନେମାଟୋଗ୍ରାଫର୍ ଆଶୁତୋଷ ପଣ୍ଡା :** ସେହିପରି ଆମ ଓଡ଼ିଆ ପୁଅ ଆଶୁତୋଷ। ଘର କଟକରୁ ପଚାଶ କିଲୋମିଟର ଦୂର କେନ୍ଦ୍ରପଡ଼ାର ମହାନ୍ତି ପାଟଣା ଗାଁରେ। ବାପା ଅଶୋକ ପଣ୍ଡା, ମାଆ କଳ୍ପନା ପଣ୍ଡା। ପୁଅକୁ ସେଣ୍ଟ୍ରାଲ୍ ୟୁନିଭର୍ସିଟି ହାଇଦ୍ରାବାଦରେ ଆର୍କିଟେକ୍ଚରରେ ପଢ଼ାଇଲେ। ସେଥିରେ ଥିବା ସିନେମାଟୋଗ୍ରାଫିରେ ତାଙ୍କର ଆଗ୍ରହ ହେଲା । ଏବେ ବଲିଉଡ୍ ସିନେମାରେ ବଡ଼ ବଡ଼ ନିର୍ମାତା, ନିର୍ଦ୍ଦେଶକଙ୍କ ପ୍ରାତଃ ସ୍ମରଣୀୟ ହେଲେ 'ଆଶୁ'।

ସଂଜୟ ଲୀଳା ଭନ୍‌ସାଲିଙ୍କର 'ଗୁଜାରିସ୍',





'ଦିଲ୍ ବୋଲେ ହାଡ଼ିପ୍ପା'

ଯଶରାଜ ବ୍ୟାନରରେ ନିର୍ମିତ 'ଦିଲ୍ ବୋଲେ ହାଡ଼ିପ୍ପା', 'ମେରେ ବ୍ରଦର୍‌କି ଦୁଲ୍‌ହନ୍', ରାମଗୋପାଲ ବର୍ମାଙ୍କ 'ସରକାର ରାଜ' ଏବଂ ବି.ଫର୍.ୟୁ. ଟିଭି ଚ୍ୟାନେଲ୍‌ରେ ମ୍ୟୁଜିକ୍ ଏକ୍ସପୋଲରର ସେ ଚିତ୍ର ଉତ୍ତୋଳକ ଅଛନ୍ତି। ଧୂମ୍-୩ରେ ସୁଦୀପ୍ତ ଚାଟାର୍ଜୀଙ୍କ ସହିତ କାମ କରି ସେ ଖୁବ୍ ଗର୍ବିତ।

ନିର୍ଦ୍ଦେଶକ ବିଜୟକୃଷ୍ଣଙ୍କ ସହ ତାଙ୍କର ସମାନ୍ତରାଳ ଭାବନା ପାଇଁ ସେ ତାଙ୍କର ଅତି ପ୍ରିୟ। ଅମୀର୍ ଖାଁ, ଅଭିଷେକ୍, କ୍ୟାଟ୍ରିନା ଇତ୍ୟାଦି ତାଙ୍କ କାମର ଖୁବ୍ ପ୍ରଶଂସା କରିଥାନ୍ତି ଏବଂ ବନ୍ଧୁ ଭଳି ବ୍ୟବହାର କରନ୍ତି।

'ବ୍ଲାକ୍', 'ସାଓ୍ୱରିଆ' ଭଳି ସଫଳ ଛବିର



'ମେରେ ବ୍ରଦର୍‌କି ଦୁଲ୍‌ହନ୍'



'ସାଓ୍ୱରିଆ'

ସିନେମାଟୋଗ୍ରାଫର୍ ରବି. କେ. ଚନ୍ଦ୍ରନ୍‌ଙ୍କ ସହିତ କାମ କରି ସେମାନଙ୍କଠାରୁ ଖୋଲାଖୋଲି ପ୍ରଶଂସା-- 'ଆଶୁତୋଷଙ୍କର ଶୈଳୀ ଖୁବ୍ ଭଲ'' --ଏତିକି ଶୁଣିବା ପୁରସ୍କାରଠାରୁ ଅଧିକ ମୂଲ୍ୟବାନ୍ ବୋଲି ଆଶୁ କହିଥାନ୍ତି।



'ବ୍ଲାକ୍'

ସେ କହନ୍ତି ଯେ ମୁଁ ସବୁବେଳେ ଓଡ଼ିଆ ସିନେମା କଥା ଭାବେ। ଏହାର ଉନ୍ନତି ହେଲେ ଆମ ସଂସ୍କୃତି ଓ ଜାତିର ସମ୍ମାନ ବଢ଼ିବ। କେହି ନିର୍ମାତା, ନିର୍ଦ୍ଦେଶକ ଏଥିପାଇଁ ସୁଯୋଗ ଦେଲେ ଓଡ଼ିଆ ସିନେମା ପାଇଁ କାମ କରିବେ ଓ ଅଧିକ ଓଡ଼ିଆ ସିନେମା ହେଲେ ଆମ ଦେଶର ଗୌରବ ଓ ଗର୍ବ ବଢ଼ିବ।

*ଆଶ୍ରମ, ଶ୍ରୀବିହାର କଲୋନୀ, କଟକ- ୭୫୩୦୦୮* **



ସାମାଜିକ ପ୍ରାଣୀ ହିସାବରେ ଭଲ, ମନ୍ଦ, ଶାଳୀନତା, ଅଶାଳୀନତା, ଭଦ୍ରାମି ଓ ଅଭଦ୍ରାମି ଇତ୍ୟାଦି ଶବ୍ଦସମୂହର ଉପଯୋଗିତା ବିଷୟରେ ଆମେ ପିଲାବେଳୁ ଶିକ୍ଷା କରିଥାଉ। ବିଦ୍ୟାଳୟଗୃହ ଓ ସମାଜରେ ଆଲୋଚନା ଦ୍ୱାରା ଆମେ ସବୁ ଲକ୍ଷ୍ୟକରି, ହୃଦୟଙ୍ଗମ କରି ଜୀବନରେ ଏହାକୁ ବ୍ୟବହାର କରିଥାଉ।

ଆର୍ଯ୍ୟସମାଜର ଇତିହାସ ଦେଖିଲେ ଆମେ ଜାଣି-ପାରୁ ଯେ ସେମାନଙ୍କର ସଭ୍ୟତା ଓ ସଂସ୍କୃତି ଖୁବ୍ ଉଚ୍ଚଧରଣର ଥିଲା।

ବର୍ତ୍ତମାନ କିନ୍ତୁ ଆମେ ଏ ଶବ୍ଦଗୁଡ଼ିକ ଭୁଲିଗଲୁଣି ବୋଲି ମନେହୁଏ। ଭଦ୍ରାମି, ମର୍ଯ୍ୟାଦା-- ଏସବୁ ଆଜିକାଲି ସମାଜରେ ଲୋପ ପାଇବାକୁ ବସିଛି। ପିଲାବେଳୁ ଏଗୁଡ଼ିକ ପରିବାର ଓ ଶିକ୍ଷାକେନ୍ଦ୍ର, ଶିକ୍ଷକ ତଥା ଅଭିଭାବକଙ୍କଠୁ ପିଲାମାନେ ଶିଖନ୍ତି।

ଜାପାନରେ ପ୍ରଥମରୁ ତୃତୀୟ ଶ୍ରେଣୀ ଯାଏଁ ପାଠ ପଢ଼ାଯାଏ ନାହିଁ। ସେମାନଙ୍କୁ ଉତ୍ତମ ଆଚରଣ ବିଷୟରେ ଶିକ୍ଷା ଦିଆଯାଏ। ନ ହେଲେ କ'ଣ ସେମାନେ ଏତେ ଉନ୍ନତି କରିଥା'ନ୍ତେ ?

ଆମେ ଯେତେବେଳେ ଆମେରିକାରେ ଥିଲୁ, ସେଠାରେ ଏସବୁ ଆଚାର ଓ ବ୍ୟବହାରର ଉପଯୋଗିତା ଅନୁଭବ କଲୁ। ଦୋକାନରୁ ଜିନିଷ ଆଣିଲାବେଳେ, କାହା ସଙ୍ଗରେ ସାକ୍ଷାତ ହେବା ସମୟରେ (have a good day, Thank u) ଆପଣଙ୍କର ଦିନଟି ଶୁଭରେ କଟୁ, ଧନ୍ୟବାଦ ଇତ୍ୟାଦି କହିବାକୁ ପଡ଼େ। ଅବଶ୍ୟ ସେଠାରେ ଅନେକ ହିଂସାତ୍ମକ କାର୍ଯ୍ୟ ସ୍କୁଲ୍‌ରେ, ଘରେ ହେବାର ଖବର ଆମେ ଖବରକାଗଜ ଓ ଟିଭିରେ ଦେଖୁଛୁ। ତଥାପି ଉତ୍ତମ ଆଚାର ବ୍ୟବହାର ଜ୍ଞାନ ଯେ ତାଙ୍କର ଅଧିକ, ଏକଥା ଆମକୁ ସ୍ୱୀକାର କରିବାକୁ ପଡ଼ିବ।

ଜଣକୁ ଦେଖିଦେଲେ ଆମେ ଜାଣିପାରିବା ସେ କେତେ ଭଦ୍ର ଓ ମାର୍ଜିତ। କଥା କହିବାରେ, ଆଚାର ବ୍ୟବହାରରେ, ବସିବାରେ ଶାଳୀନତା ଇତ୍ୟାଦି, ଇତ୍ୟାଦି କେତେକ ଉତ୍ତମ ବ୍ୟବହାର --ଏସବୁ ସମାଜର ଭଦ୍ର ମଣିଷର ରହିବା ଆବଶ୍ୟକ।

ସଭାରେ ହେଉ ବା ଏକାଠି ଆଲୋଚନା ହେଉ ଗୋଡ଼ ଉପରେ ଗୋଡ଼ ରଖି ବସିବା ଉଚିତ ନୁହେଁ। କେତେଜଣ ବସି କଥା ହେଲାବେଳେ ମଝିରେ ହଠାତ୍ କଥା ଆରମ୍ଭ କରିବା ଠିକ୍ ନୁହେଁ। ଯଦି ଜରୁରୀ କଥା ଅଛି, ତେବେ ''କ୍ଷମା କରିବେ, ମୋର ଟିକେ କଥା ଥିଲା।''--ଏଭଳି କହି କଥା ଆରମ୍ଭ କରିବା ଆବଶ୍ୟକ। ଘର ସାମନାରେ ବା ଦୋକାନ ସାମନାରେ ଠିଆ ହୋଇ ଏକତ୍ର କାହା ସଙ୍ଗେ ଗପସପ କରିବାକୁ ଅଭଦ୍ରାମି କୁହାଯାଏ। ଏ ବ୍ୟବହାରଟି ଆମ ରାଜ୍ୟରେ ବେଶୀ ଦେଖାଯାଏ। ରାସ୍ତା ମଝିରେ ଠିଆ ହୋଇ ବା ଦୋକାନ ଘର ସାମନାରେ ଆଧୁନିକ ଯୁବସମାଜ ଗପିବାର, ମୋବାଇଲରେ ଘଣ୍ଟା ଘଣ୍ଟା କଥା କହିବାର ମୁଁ ଦେଖିଛି।

ଜଣେ କିରାଣୀ ହେଉ ବା ମ୍ୟାନେଜର ହେଉ ବା କେହି ଜଣେ ଉଚ୍ଚପଦାଧିକାରୀ ହୁଅନ୍ତୁ, ତାଙ୍କ ଚଉକି ହେଲା ତାଙ୍କର ପଦବୀର ମର୍ଯ୍ୟାଦା। ସେ ସ୍ଥାନକୁ ଦଖଲ କରିବାର କାହାର ଅଧିକାର ନାହିଁ ।

ତେଣୁ ସେ ଚଉକିଟି ଖାଲି ପଡ଼ିଥିଲେ ମଧ୍ୟ ଅନ୍ୟ କେହି ସାକ୍ଷାତ କରିବାକୁ ଆସିଲେ ବା କିଛି କାମ ଲାଗି କଥାବାର୍ତ୍ତା କରିବା ଜରୁରୀ ହେଲେ ମଧ୍ୟ ସେ ସ୍ଥାନକୁ ଦଖଲ କରିବା ଉଚିତ ନୁହେଁ ।

ପୁଣି ସଭାସମିତିରେ କେହି ବକ୍ତବ୍ୟ ଦେଲାବେଳେ ଶ୍ରୋତାମାନେ ମଝିରୁ ଠିଆ ହୋଇ ପାଟି କରିବାର ମୁଁ ଦେଖିଛି । ତାହା ମୋତେ ସବୁଠୁ ଅଧିକ ଅଭଦ୍ରାମି ବୋଲି ଜଣାଯାଏ । ସେମାନଙ୍କର କାମ ହେଲା-- ସଭାସମିତିରେ ଅଭଦ୍ର ଆଚରଣ ଦେଖାଇବା । କେହି ତାଙ୍କୁ କିଛି ନ କହିପାରିଲେ ମଧ୍ୟ ସମସ୍ତେ ଅନ୍ତରରେ ତାଙ୍କର ଏ ଗୁଣ ପ୍ରତି ବିମୁଖ ଥାଆନ୍ତି । ସଭାରେ ଖାଦ୍ୟର ବ୍ୟବସ୍ଥା ଥିଲେ କେତେଜଣ କେବଳ ସେଥିପାଇଁ ହିଁ ଆସନ୍ତି ।

ଏମିତିକି ଜଣେ ମତେ ଚିଠିରେ ଜଣେଇଲେ ଯେ, "ଆପଣଙ୍କର 'ସଂସାର' ବାର୍ଷିକ ଉତ୍ସବରେ ଖାଇବାର ପ୍ୟାକେଟ୍ ମତେ ମିଳିଲା ନାହିଁ ।" ମୁଁ ତାଙ୍କୁ ଉତ୍ତରରେ ଲେଖିଥିଲି-- "ଆପଣ ଖାଇବାକୁ ଆସିଥିଲେ ବୋଲି ଆଗରୁ ଜଣାଇଥିଲେ, ମୁଁ ହୋଟେଲରେ ବ୍ୟବସ୍ଥା କରିଥାନ୍ତି । କ୍ଷମା କରିବେ ।"

ଆମର ଶାସକମାନଙ୍କର ପେଣ୍ଠସ୍ଥଳୀ ବିଧାନସଭା ଓ ଲୋକସଭାର କାର୍ଯ୍ୟକଳାପ ଆମେ ଦେଖୁଛେ ଓ ପଢୁଛେ । ସମସ୍ତେ ଶିକ୍ଷିତ ଓ ଭଦ୍ର । ଆମର ଯୁବପିଢି ଓ ଶିଶୁପିଢ଼ି ଏଭଳି ଅସ୍ୱାଭାବିକ ନମୁନାରୁ ଶିଖିବେ କ'ଣ ? ଅଭଦ୍ରାମିର ସୀମା ଅତିକ୍ରମ କରିବାର ଚେଷ୍ଟାରୁ ସେମାନେ ତିଳେମାତ୍ର ବିଚ୍ୟୁତ ହେଉନାହାନ୍ତି । ଆମ ଦେଶର, ଆମ ରାଜ୍ୟର ଏଭଳି ଚିତ୍ର ବିଦେଶରେ ଦେଖିଲେ ସେମାନେ କିଭଳି ଧାରଣା କରିବେ ?

ଆମ ରାଜ୍ୟର ଅନେକ ସ୍ଥାନକୁ ଆମର ପୂର୍ବତନ ଐତିହ୍ୟ, ସଂସ୍କୃତିର ନିଦର୍ଶନ ଦେଖେଇ ପର୍ଯ୍ୟଟନ ସ୍ଥଳୀର ମାନ୍ୟତା ଦେବାପାଇଁ ଆମେ ଚେଷ୍ଟା ଚଳାଇଛୁ, ମାତ୍ର ବିଦେଶୀ ପର୍ଯ୍ୟଟକମାନଙ୍କୁ ଆମେ କିଭଳି ବ୍ୟବହାର ଦେଖାଉଛୁ, ତାହା ଆମେ ହୃଦୟଙ୍ଗମ କରିବା ଆବଶ୍ୟକ । ମାତୃଭାଷାକୁ ରକ୍ଷା କରିବା ପାଇଁ ଆମେ ବ୍ୟସ୍ତ; ମାତ୍ର ଆମ ମାତୃଭାଷାରେ ଯେଉଁଭଳି ଶବ୍ଦ ବ୍ୟବହାର କରି ଅନ୍ୟମାନଙ୍କ ପାଇଁ ଉଦାହରଣ ହେଉଛୁ, ତାହା କଣ ଚିନ୍ତାର ବିଷୟ ନୁହେଁ ?

ଆମେ ଆମେରିକାରୁ ଫେରିବା ସମୟରେ ସେଥିରେ ଅଧିକ ସଂଖ୍ୟକ ଓଡ଼ିଆ ଓ ପଞ୍ଜାବୀ ଯାତ୍ରୀ ଥିଲେ । ବିମାନରେ ପଶିବା ସମୟରେ ଜାଣିହେଇଗଲା ଯେ ଏ ବିମାନରେ କେଉଁ ଦେଶର ବା ରାଜ୍ୟର ଯାତ୍ରୀ ଅଛନ୍ତି । କାରଣ ସେମାନଙ୍କର ପାଟିତୁଣ୍ଡ, ବସିବା ଯାଗା ଉପରେ ଖାଇବା, ଛିଣ୍ଡା ଜରି କାଗଜ ଇତ୍ୟାଦି ୟାଡ଼େସ୍ୟାଡ଼େ ପଡ଼ିବାର ଦୃଶ୍ୟ ଅତି ଅସହ୍ୟ ଥିଲା । ଏୟାର ହୋଷ୍ଟେସ୍‌ମାନଙ୍କର ମୁହଁରେ ବିରକ୍ତିର ଚିହ୍ନ ବେଶ୍ ବାରି ହୋଇପଡୁଥିଲା । ମୋର ଶାଲ୍‌ଟି ମଧ୍ୟ ଚୋରି ହୋଇଗଲା । ଜଣେ ଏୟାର ହୋଷ୍ଟେସ୍ ହସି ହସି ଇଂରାଜୀରେ କହିଲେ, "ଏମାନଙ୍କୁ ସାବଧାନ ରୁହନ୍ତୁ ।" ମୁଁ ମୁହଁ ତଳକୁ କଲି । ଆମେ ସବୁବେଳେ ଅନ୍ୟକୁ ସମାଲୋଚନା କରିବାକୁ ଭଲପାଉ । ଆମକୁ ତାହା ଖୁବ୍ ସନ୍ତୋଷ ଦିଏ । କାରଣ ସମାଲୋଚନାରୁ ଏହା ପ୍ରମାଣିତ ହୁଏ ଯେ ସମାଲୋଚନାକାରୀ ସମାଲୋଚିତମାନଙ୍କଠାରୁ ବହୁତ ଊର୍ଦ୍ଧ୍ୱରେ ।

ଆମେ ଶିକ୍ଷିତ, ସାହିତ୍ୟିକ, ଶାସକ, ଜ୍ଞାନୀ ଅଭିଭାବକମାନଙ୍କର କ'ଣ ଦାୟିତ୍ୱ ନୁହେଁ, ଏସବୁକୁ ପ୍ରଥମ ଗୁରୁତ୍ୱ ଦେବା ?

**-- ଅନସୂୟା ନନ୍ଦ**

# ଛେନାଗୁଡ଼

ଶ୍ରୀ ଶ୍ରୀନିବାସ ଖଣ୍ଡାୟୀ

ମାଆଟିଏ ପୁଅଟିଏ । ମାଆ ପର ଘରେ ପାଇଟି କରି ଯାହା ଆଣେ, ଦୁହେଁ ଚଳିଯାନ୍ତି । ଦିନେ ମା'କୁ ଜର ହୋଇଥାଏ । ସେ କାମକୁ ଯାଇ ନଥାଏ । ପୁଅ ଖେଳି ଖେଳି ଆସି କହିଲା-- ମା' କ'ଣ ଖାଇବି ?

-- 'ଛେନାଗୁଡ଼' !!! ବିରକ୍ତ ହୋଇ ମା' କହିଲା ।

ପୁଅଟି ନୂଆ ଖାଦ୍ୟ କଥା ଶୁଣି ହାଣ୍ଡି କଡ଼େଇ ବହେ ଦରାଣ୍ଡି ହେଲା । କିଛି ନ ପାଇବାରୁ ମା'କୁ ଆସି ପଚାରିଲା-- ମା' କାହିଁ କେଉଁଠି ତ ନାହିଁ ?

ଜର ପ୍ରକୋପରେ ମା'ସିନା ପୁଅକୁ ଏକଥା କହିଥିଲା, ହେଲେ ପୁଅର ବ୍ୟସ୍ତତା ଦେଖି କହିଲା-- ଆରେ ଧନ! ଛେନାଗୁଡ଼ କ'ଣ ଆମ ଭାଗ୍ୟରେ ଅଛି ? ସେ ପରା ବଡ଼ଲୋକି ଖାଇବା ।



--ଆମେ କ'ଣ ବଡ଼ଲୋକ ହୋଇପାରିବା ନାହିଁ ?

--ତୁ ପାଠ ପଢ଼ିଲେ ଯାଇ ହେବ । ତୁ ପଢ଼, ଚାକିରି କର, ରୋଜଗାର କର, ଛେନାଗୁଡ଼ ନିତିଦିନ ଖାଇବୁ...... ।

--ହଁ ମା' ମୁଁ ଛେନାଗୁଡ଼ ନିତିଦିନ ଖାଇବି ଆଉ ତୋତେ ଖୁଆଇବି..... ।

ପିଲାଟି ମନେ ମନେ ପଣ କଲା । ଠୁଙ୍ଗା ତିଆରି କରି ପଇସା ସଞ୍ଚିଲା, ପାଠ ପଢ଼ିଲା । ଯାହାହେଉ ଖଣ୍ଡେ ଚାକିରି ବି ତାକୁ ମିଳିଗଲା ମ୍ୟାଟ୍ରିକ୍ ପାଶ କଲା ପରେ । ପ୍ରଥମ ମାସର ଦରମା ପାଇଲା ପରେ ବଜାରରୁ ଛେନାଗୁଡ଼ ଧରି ମା' ପାଇଁ ଆଣିଲା ।

--ମା' ତୋ ପାଇଁ ଭଲ ଜିନିଷ ଆଣିଛି !

--କ'ଣ କିରେ......?

--ଛେନାଗୁଡ଼ !

ମା' ଆଖିରୁ ଲୁହ ଥପ୍ ଥପ୍ ବହିଲା । ସେ ପୁଅକୁ ଆଉଁସି ଦେଇ କହିଲା-- ଛେନାଗୁଡ଼ ଆମେ ଦୁଇଜଣ ଆଜି ଖାଇବା । ହେଲେ ଆମଠାରୁ ଆହୁରି ଗରିବ ଅଛନ୍ତି, ସେମାନଙ୍କୁ ଛେନାଗୁଡ଼ ଖୁଆଇବ କିଏ ?

--ମୁଁ ଖୁଆଇବି ।

--ତୁ କି ପାଠ ପଢ଼ିଛୁ, କି ଚାକିରି କରିଛୁ ଯେ ବସ୍ତିରେ ସମସ୍ତଙ୍କୁ ଛେନାଗୁଡ଼ ଖୁଆଇବୁ ।

--ମୁଁ ପଇସା ପାଇବି । ଆହୁରି ପଢ଼ିବି । ବଡ଼ ଚାକିରି କରିବି, ତୋ' ଇଚ୍ଛା ପୂରଣ କରିବି ।

ସତକୁ ସତ ପିଲାଟି ଜଣେ କଲେକ୍ଟର ହୋଇ ବାହାରିଲା । ବସ୍ତିରେ ସମସ୍ତେ ତାକୁ 'ସୁନାପୁଅ' କହିଲେ । ଦିନେ ସେ ଏକ ସଭାରେ ପିଲାମାନଙ୍କୁ ସମ୍ବୋଧନ କରି କହିଲା-- ଛେନାଗୁଡ଼ ଖାଇବା ଓ ଖୁଆଇବାର ପଣ ଆଜି ମୋତେ କଲେକ୍ଟର କରିପାରିଛି । ଜୀବନରେ କିଛି ହେବାକୁ ଚାହିଁଲେ ପଣ ନେଇ କାମ କରିବାକୁ ହେବ ।

*୧୬୦, ସେକ୍ଟର- ୩, ନୀଳାଦ୍ରିବିହାର, ଭୁବନେଶ୍ୱର- ୨୧*





# କଳିର ଅଳି

ଶ୍ରୀ ବ୍ରଜବିହାରୀ ଦାଶ

ଦେଖିଲା କୁନା ଫୁଲଗଛରେ
ଭରିଛି ଫୁଲକଳି
ଥାଇ ଡାଳରେ ପବନ ମେଳେ
ଖେଳନ୍ତି ଖେଳ ଦୋଳି ।
ଭାବିଲା କୁନା ତୋଳିଲେ କଡ଼
ପାଦେ ଦିଅନ୍ତା ଦଳି
ତୋଳିବା ପାଇଁ ବଢ଼ାନ୍ତେ ହାତ
କଳିଟି କଲା ଅଳି ।
"କୁନା ଭାଇନା ତୋଳନି ମୋତେ
କାଲି ଫୁଟିବି ମୁହିଁ
ଦେବତା ଗଳେ ପାଇବି ଶୋଭା
ଗଜରା ହାରେ ରହି ।
ପରଜାପତି ଓ ମହୁମାଛି
କରିବେ ଗେଲ ଆସି
ତୁମରି ପାଇଁ ସଞ୍ଚିବେ ମଧୁ
ଶୁଣ୍ଢେ ତାଙ୍କର ଶୋଷି ।
ଖାଇବ ତୁମେ ମନ ମଉଜେ
ଦେହକୁ ହେବ ପୁଷ୍ଟି
ସଂସାର ହିତେ ବିଧାତା ମୋତେ
କରିଛି ଜାଣ ସୃଷ୍ଟି ।
ଅତର ହେବ ଦେହରୁ ମୋର
ବାସିବ ଚଉଦିଗ
ମୋତେ ଛିଣ୍ଡାନା କୁନା ଭାଇନା
ମନରୁ ତେଜ ରାଗ ।
କଳିକା ତୁମେ ହୋଇଛ ଆଜି
ଫୁଟିବ ଫୁଲ ପରି
ଅର୍ଜିବ ଯଶ ଗୁଣରେ ତୁମ
ଦୁନିଆଁ ଯିବ ଭରି ।
କାଲିକି ଦୁହେଁ ଫୁଟିବା ଆମେ
କରିବା ଦେଶ ହିତ
ଖେଳିବ ଆସ ଆମର ତୁଲେ
ବସିବା ଦୁହେଁ ମିତ ।"
ବୁଝିଲା କୁନା ନିଜର ଭୁଲ୍
ତୋଳିଲା ନାହିଁ କଳି
ପରଜାପତି ସହିତେ ମିଶି
ଖେଳିଲେ ଲୁଚକାଳି ।

*ଏଫ-୩୨, ସେକ୍ଟର-୬, ରାଉରକେଲା-୨*





## ପୁସ୍ତକ ପରିଚୟ

**ଭୂମିକନ୍ୟା ସୀତା**-- ଲେଖକ- **ଶ୍ରୀ ନରେଶ ଚନ୍ଦ୍ର ବେହେରା,** ଉତ୍ତରପଡ଼ା, ଅନୁଗୁଳ, ମୂଲ୍ୟ- ୧୦ ଟଙ୍କା ମାତ୍ର।

ଏହି ଡିମେଇ ଆକାରର ୩୨ ପୃଷ୍ଠାର ପୁସ୍ତକଟିରେ ସୀତାଜନ୍ମ, କାକପକ୍ଷୀକୁ ଅଭିଶାପ, ସୀତାଙ୍କ ଅଗ୍ନି ପରୀକ୍ଷା, ଧରିତ୍ରୀ କୋଳରେ ସୀତା ଇତ୍ୟାଦି ସତୀ ସୀତାଙ୍କର ଜନ୍ମରୁ ଶେଷ ଜୀବନ ପର୍ଯ୍ୟନ୍ତ ୯ଟି ବିଭାଗରେ ବିଭକ୍ତ କରାଯାଇଛି। ପ୍ରତ୍ୟେକ ବିଭାଗରେ ଚିତ୍ର ରହିଛି। ସୀତାଙ୍କର ବିଷୟରେ ଜାଣିବା ପାଇଁ ପିଲାମାନଙ୍କୁ ସୁଦୃଶ୍ୟ ରଂଗିନ୍ ପ୍ରଚ୍ଛଦ ସହ ଏହି ଛୋଟ ପୁସ୍ତକଟି ସହାୟକ ହୋଇପାରିବ ବୋଲି ଆଶା ଓ ବିଶ୍ୱାସ।

**ନବ ଆକାଶର ଚନ୍ଦ୍ରମା**-- ସମ୍ପାଦନା- **ଶ୍ରୀ ବୁଦ୍ଧଦେବ ସେଠୀ,** ବି/୪୯, ଦୀପଶିଖା, ଅନୁଗୋଳ- ୭୫୯୧୪୭, ମୂଲ୍ୟ- ୨୦ ଟଙ୍କା (ପ୍ରତି ଖଣ୍ଡ) ମାତ୍ର।

କ୍ରାଉନ୍ ଆକାରର ଏହି ତ୍ରୈମାସିକ ଶିଶୁ କିଶୋର ପତ୍ରିକାଟିରେ ସ୍ୱନାମଧନ୍ୟ ଶିଶୁ ସାହିତ୍ୟିକମାନଙ୍କର ଦ୍ୱାରା ରଚିତ କବିତା, ଗଳ୍ପ, ନାଟକ, ସାଧାରଣ ଜ୍ଞାନ, ପୁରାଣ କଥା, ବଡ଼ ମଣିଷଙ୍କ ଜୀବନୀ ଇତ୍ୟାଦି ରହିଛି। ଚିତ୍ର ସହିତ ସମସ୍ତ ବିଷୟ ଶିକ୍ଷଣୀୟ ଓ ଶିଶୁ ମନଲାଖି ହୋଇଛି। ପ୍ରଚ୍ଛଦରେ ଗୋଟିଏ ଛୋଟ ଶିଶୁର ମନୋମୁଗ୍ଧକର ଚିତ୍ର ରହିଛି। ପତ୍ରିକାଟି ଆଦୃତ ହେଲେ ସମ୍ପାଦନା ମଣ୍ଡଳୀର ଶ୍ରମ ସାର୍ଥକ ହେବ।

**ଏକାମ୍ର କୁସୁମ**-- ସମ୍ପାଦନା- **ଡକ୍ଟର ଶରତ କୁମାର ବିଶ୍ୱାଳ,** ମହିମା ଜ୍ଞାନ ମନ୍ଦିର, ଚନ୍ଦ୍ରଶେଖରପୁର, ପଟିଆ, ଭୁବନେଶ୍ୱର ସହଯୋଗ ରାଶି- ୨୦ ଟଙ୍କା ।

ଏକାମ୍ର ଶିଶୁ ସାହିତ୍ୟ ସଂସଦର ଏହି କ୍ରାଉନ୍ ଆକାରର ପତ୍ରିକାଟି ରାଜ୍ୟସ୍ତରୀୟ ଶିଶୁ ସାହିତ୍ୟିକ ସମ୍ମିଳନୀରେ ୯ମ ବାର୍ଷିକ ଉତ୍ସବରେ ପ୍ରକାଶିତ ହୋଇଛି। ଏହା ଅନେକ ସ୍ୱନାମଧନ୍ୟ ଲେଖକ/ଲେଖିକାମାନଙ୍କ ଦ୍ୱାରା ପରିପୁଷ୍ଟ ହୋଇଛି। ଅନେକ ଶିଶୁ କବିତାରେ ଭରପୂର ଏହି ପତ୍ରିକାଟିରେ ଶିଶୁ ସାହିତ୍ୟ ସଭା, ସମ୍ବର୍ଦ୍ଧନା ଉତ୍ସବ, ପୁସ୍ତକ ଉନ୍ମୋଚନ ଆଦି ବିଷୟ ତଥା ଏହି ସଂସଦର କାର୍ଯ୍ୟାବଳୀ, ନୂତନ ସଭ୍ୟସଭ୍ୟାଙ୍କର ପରିଚୟ ଇତ୍ୟାଦି ବିଭାଗସମୂହ ଏହାର କଳେବରକୁ ପୁଷ୍ଟ କରି ପାରିଛନ୍ତି। ରଂଗିନ୍ ପ୍ରଚ୍ଛଦଟି ଆମର ଉତ୍କଳୀୟ ସଂସ୍କୃତିର ପୂରାତନ ଐତିହ୍ୟ କୋଣାର୍କ ମନ୍ଦିର, ଧଉଳିଗିରି ଓ ଲିଙ୍ଗରାଜ ମନ୍ଦିରର ଦୃଶ୍ୟ ସହ ଆକର୍ଷଣୀୟ ହୋଇପାରିଛି।

**ଆମ ଧୂମକେତୁ ବିଜ୍ଞାନ**-- ଲେଖକ- **ଶ୍ରୀ ହିମାଂଶୁ ଶେଖର ଫତେସିଂହ,** ଅଭ୍ୟର୍ଥନା, ଇବ୍ ଥର୍ମାଲ, ଝାରସୁଗୁଡ଼ା- ୭୬୮୨୩୪, ମୂଲ୍ୟ- ୧୨ ଟଙ୍କା ମାତ୍ର ।

ଏହି ୩୨ପୃଷ୍ଠାର ଡିମେଇ ଆକାର ପୁସ୍ତକଟିରେ ଧୂମକେତୁର ବିବରଣୀ ରହିଛି। ପ୍ରତି ପୃଷ୍ଠାରେ ଚିତ୍ର ମଧ୍ୟ ରହିଛି। ଧୂମକେତୁର ପ୍ରକାର, ଗ୍ରହ ପୃଷ୍ଠରେ ଧୂମକେତୁର ସଂଘର୍ଷ, ହେଲ୍‌ବପ୍ ଇତ୍ୟାଦି ପାଠ କଲେ ଆଧୁନିକ ଶିଶୁ କିଶୋରମାନଙ୍କର ବିଜ୍ଞାନୀ ମନକୁ ଏହା ଅନେକ ଖୋରାକ ଯୋଗାଇବ ନିଶ୍ଚୟ। ପ୍ରଚ୍ଛଦଟି ରଂଗିନ୍ ହେବା ସହ ସୁଦୃଶ୍ୟ ହୋଇପାରିଛି। ପୁସ୍ତକଟିର ଆଦୃତି କାମନା କରୁ।

---





୨୫ । ୩-- ବଲିଉଡ୍‌ର ପ୍ରଖ୍ୟାତ ଅଭିନେତ୍ରୀ ନନ୍ଦାଙ୍କର ୭୫ବର୍ଷରେ ପରଲୋକ । ତାଙ୍କର ଅଭିନୀତ ଚଳଚ୍ଚିତ୍ର-ଗୁଡ଼ିକ ମଧ୍ୟରେ ଧୁଲ୍‌କା ଫୁଲ୍, ନୟା ସଂସାର, ଭାବୀ, ଗୁମ୍‌ନାମ୍ ଇତ୍ୟାଦି ବେଶ୍ ଲୋକପ୍ରିୟ ହୋଇଥିଲା।

❀❀❀❀❀❀❀❀❀❀❀❀❀

## ଶବ୍ଦଧନ୍ଦା-ମଇ, ୨୦୧୪

❀❀❀❀❀❀❀❀❀❀❀❀❀

ଡକ୍ଟର ନିରଞ୍ଜନ ସାହୁ

୧। କାଗଜରେ ବା କାର୍ଡରେ ଘର କାଟି ଉତ୍ତର ଲେଖନ୍ତୁ ।

୨। ଶୂନ୍ୟ ଘରେ ଗୋଟିଏ ମାତ୍ର ଅକ୍ଷର ବସାନ୍ତୁ।

୩। ଉତ୍ତର କାଗଜରେ ନାମ ଓ ଠିକଣା ଲେଖନ୍ତୁ।

୪। ସମ୍ପାଦିକାଙ୍କ ନିଷ୍ପତ୍ତି ଚୂଡ଼ାନ୍ତ ।

୫। ଆସନ୍ତା ସଂଖ୍ୟାରେ ଫଳ ପ୍ରକାଶ ପାଇବ।

୬। ଉତ୍ତର ପହଞ୍ଚିବାର ଶେଷ ତାରିଖ ୨୨।୫।୨୦୧୪

୭। ନିୟମାବଳୀ ପଢ଼ି ଉତ୍ତର ଦିଅନ୍ତୁ ।

| | | | | | | |
|---|---|---|---|---|---|---|
| ୧ | | ୨ | | | | ୩ |
| ୪ | | | * | * | ୫ | |
| ୬ | | | | ୭ | | |
| ୮ | | * | ୯ | | | * |
| | * | ୧୦ | | ୧୧ | | ୧୨ |
| ୧୩ | ୧୪ | | ୧୫ | | | |
| * | ୧୬ | | | ୧୭ | | |

### ସୂଚନା

**ବାମରୁ ଡାହାଣ--** ୧ । ଓଡ଼ିଶାର ପ୍ରସିଦ୍ଧ କବି (୭), ୪ । ଛାଉଣି (୩), ୫। ମୁହଁର ଏକ ଅଂଗ (୨), ୬। ସୁନ୍ଦର (୪), ୭। କୋମଳ (୩), ୮। ଆନନ୍ଦ (୨), ୯। ଏକ ସୁଗନ୍ଧ ପୁଷ୍ପ (୩), ୧୦। ବ୍ୟାପୃସ୍ତ (୨), ୧୬। କୁଆ (୩), ୧୩। ପାପୀଙ୍କ ମୃତ୍ୟୁ ପର ସ୍ଥାନ (୩), ୧୫। କନ୍ଦ/ଗୁଡ଼ (୩), ୧୬। ପ୍ରତ୍ୟୁତ୍ତର (୩), ୧୭। ସାପ ଖେଳାଳି (୩)।

**ଉପରୁ ତଳ --** ୧ । ବୃକ୍ଷ (୨), ୨। ପୃଥିବୀ (୩), ୩। ପ୍ରକାର (୩), ୫। ନରକ ସମ୍ପର୍କିତ (୪), ୬। ମୁସଲମାନଙ୍କ ପର୍ବ (୪), ୭। ନୋଇଁବା (୨), ୯। ପତାକା (୩), ୧୦। ଜମିର କ୍ଷେତ୍ରଫଳ (୩), ୧୧। ସନ୍ନ୍ୟାସୀ (୩), ୧୨। ବ୍ରହ୍ମାଙ୍କ ମାନସପୁତ୍ର (୩), ୧୪। ଓଡ଼ିଶାର ଏକ ପର୍ବ ।

*ସାହୁପଡ଼ା, ବରୀ, ଯାଜପୁର-୭୫୫୦୦୩*

---

**ଅପ୍ରେଲ ମାସ ଶବ୍ଦଧନ୍ଦାର ଉତ୍ତର (ବାମରୁ ଡାହାଣ)--** ୧। ଦଶହରା, ୩। ପାର୍ବତୀ, ୬। ତିଳକ, ୭। ମନ୍ଦିର, ୮। ଅମୃତସର, ୧୦। ଭାରତୀୟ, ୧୩। ଜାବାଳି, ୧୫। ବିବ୍ରତ, ୧୭। ଦେବଗଡ଼, ୧୮। ରଜନୀଗନ୍ଧା।

**ଉପରୁ ତଳ--** ୧। ଦତିଅଳ, ୨। ରାଜ୍ୟ, ୩। ପାମର, ୪। ତୀର, ୬। କତ, ୯। ସଭା, ୧୧। ରବି, ୧୨। ତୀବ୍ରଗନ୍ଧା, ୧୪। ବାସର, ୧୬। ତଡପ ।

---

ସମ୍ପୂର୍ଣ୍ଣ ଠିକ୍ ଉତ୍ତରଦାତାଙ୍କ ନାମ-- **ଲକ୍ଷ୍ମୀପ୍ରିୟା ଦାସ,** ସୁଦର୍ଶନ ନଗର, ପୁରୀ; **ରାସେଶ୍ୱର ମହାନ୍ତ,** ଚମ୍ପୂଆ, କେନ୍ଦୁଝର।

ବିଳମ୍ବରେ ଆସିଥିବା ମାର୍ଚ୍ଚ ମାସର ଠିକ୍ ଉତ୍ତରଦାତା-- **ଧରଣୀଧର ବେହେରା,** ମୋଗଲ ପାଟଣା, କୁଆଁପାଳ, କଟକ; **ପ୍ରଦୀପ କୁମାର ଦାଶ,** ହରିଶଙ୍କର ରୋଡ୍, ବଲାଙ୍ଗୀର ।

# ପୃଥ୍ୱୀ କ୍ଷଣକ୍ଷଣକେ ଆନ

## ଓଡ଼ିଶା ଖବର

୨୬ । ୩-- ଓଡ଼ିଶାର କଳାକାର ମନୋଜ ମହାନ୍ତି ୨୦୧୩-୧୪ ବର୍ଷ ପାଇଁ କେନ୍ଦ୍ର ଲଳିତ କଳା ଏକାଡେମୀ ଦ୍ୱାରା ପୁରସ୍କୃତ। ତାଙ୍କର କୃତି 'ଡଷ୍ଟ୍ କ୍ଲିନର' ପାଇଁ ସେ ଏହି ବିଶେଷ ସମ୍ମାନର ଅଧିକାରୀ ହୋଇପାରିଛନ୍ତି ।

୩ । ୪-- ମାଓପ୍ରବଣ ମାଲକାନଗିରିର ୩୦ହଜାର ଆଦିବାସୀଙ୍କର ଭୋଟ୍ ବର୍ଜନ ନିଷ୍ପତ୍ତି ।

୫ । ୪-- ଏକ୍‌ଜିଟ୍ ପୋଲ ସର୍ଭେ ଓ ବିଭିନ୍ନ ଗଣମାଧ୍ୟମରେ ଏହାର ପ୍ରଚାର ଓ ପ୍ରସାରକୁ ନିର୍ବାଚନ କମିଶନଙ୍କ ନିଷେଧାଦେଶ ।

୧୦ । ୪-- ମାଲକାନଗିରିଠାରୁ ୧୦୦ କି.ମି ଦୂର ଛତିଶଗଡ଼ ଦରଭା ଘାଟିରେ ମାଓବାଦୀ ଆକ୍ରମଣ ଫଳରେ ୬ଜଣ ଜବାନଙ୍କ ସମେତ ୧୫ ମୃତ ।

୧୪ । ୪-- ପ୍ରଫେସର ନିତ୍ୟାନନ୍ଦ ଶତପଥୀ ଚଳିତ ବର୍ଷର ମର୍ଯ୍ୟାଦାଜନକ ବିଷୁବ ପୁରସ୍କାରରେ ସମ୍ମାନିତ ।

୧୮ । ୪-- ରାଜ୍ୟରେ ଏଥର ଦୁଇ ପର୍ଯ୍ୟାୟରେ ମୋଟ ମତଦାନ ସମୁଦାୟ ଶତକଡ଼ା ୭୪ଭାଗ ହୋଇଛି ।

-- ମାର୍ଶାଘାଇରେ ହିଂସାକାଣ୍ଡ । ୨୦ଟି ଇଭିଏମ୍ ଜବତ । କେନ୍ଦ୍ରାପଡ଼ାରେ ୧୪୪ଧାରା ଜାରି ।

## ଭାରତ ଖବର

୨୩ । ୩-- ଦୀର୍ଘ ୪ ବର୍ଷ ପରେ ପାକିସ୍ତାନୀ ଆତଙ୍କବାଦୀ ତଥା ଇଣ୍ଡିଆନ୍ ମୁଜାହାଦିନ୍‌ର ୟାସିନ୍ ଭଟ୍ଟକଲର ଗିରଫ ।

୨୬ । ୩-- ପୂର୍ବତନ ଭାରତୀୟ ହକି ଦଳର ଅଧିନାୟକ ଜୁଡ୍ ଫେଲିକ୍ସ ପୁରୁଷ ହକି ଦଳର ନୂତନ କୋଚ୍ ।

୪ । ୪-- ମୁମ୍ବାଇ ଶକ୍ତି ମିଲ୍‌ର ଗଣବଳାତ୍କାର ମାମଲାରେ ୩ଜଣଙ୍କୁ ଫାଶୀଦଣ୍ଡ ଓ ... ଜଣଙ୍କୁ ଆଜୀବନ କାରାଦଣ୍ଡ ।

୫ । ୪-- ୨୪ଜଣ ପ୍ରତିଯୋଗୀଙ୍କୁ ପଛରେ ପକାଇ ଜୟପୁରର କୋୟଲ୍ ରାଣାଙ୍କର 'ମିସ୍ ଇଣ୍ଡିଆ' ଟାଇଟଲ୍ ହାସଲ ।

୬ । ୪-- ଆସାମରେ ଶତକଡ଼ା ୭୨.୫%ଓ ତ୍ରିପୁରାରେ ୮୪ % ମତଦାନ ।

୧୨ । ୪-- ବରିଷ୍ଠ କବି ତଥା ଗୀତିକାର ଗୁଲ୍‌ଜାର୍ ସମ୍ମାନଜନକ ୪୫ତମ ଦାଦା ସାହେବ ଫାଲ୍‌କେ ପୁରସ୍କାର-୨୦୧୩ ପାଇଁ ମନୋନୀତ ।

୧୫ । ୪-- ଏକ ଐତିହାସିକ ରାୟରେ ସୁପ୍ରିମ୍ କୋର୍ଟର କିନ୍ନରମାନଙ୍କୁ ତୃତୀୟ ଲିଙ୍ଗର ମାନ୍ୟତା ପ୍ରଦାନ । ଏହି ବର୍ଗର ଲୋକଙ୍କୁ ଏଣିକି ଶିକ୍ଷା ଓ ନିଯୁକ୍ତି କ୍ଷେତ୍ରରେ ଅନ୍ୟାନ୍ୟ ପଛୁଆ ବର୍ଗର (ଓବିସି) ସୁବିଧା ଦିଆଯିବ ।

୧୬ । ୪-- ସିଓଲଠାରେ ୬୧ତମ ରାଷ୍ଟ୍ରୀୟ ଚଳଚ୍ଚିତ୍ର ପୁରସ୍କାର ଘୋଷଣାରେ ହିନ୍ଦୀ-ଇଂରାଜୀ ଚଳଚ୍ଚିତ୍ର 'ଶିପ୍ ଅଫ୍ ଥିସିୟସ୍' ସର୍ବଶ୍ରେଷ୍ଠ ଚଳଚ୍ଚିତ୍ର, ଜଲି ଏଲ୍.ଏଲ୍.ବି ଶ୍ରେଷ୍ଠ ହିନ୍ଦୀ ଚଳଚ୍ଚିତ୍ର ଏବଂ ଭାଗ୍ ମିଲ୍‌ଖା ଭାଗ୍ ସମ୍ପୂର୍ଣ୍ଣ ମନୋରଂଜନ ପ୍ରଦାନ କରୁଥିବା ସର୍ବଶ୍ରେଷ୍ଠ ଲୋକପ୍ରିୟ ରାଷ୍ଟ୍ରୀୟ ଚଳଚ୍ଚିତ୍ର ଭାବେ ମନୋନୀତ । ଓଡ଼ିଆ ଚଳଚ୍ଚିତ୍ର 'କଙ୍କି ଓ ସାପ'ର ପ୍ରଚ୍ଛଦପଟ ବ୍ୟାଖ୍ୟାକାର ନିମନ୍ତେ ଲିପିକା ସିଂହ ଦରାଇ ମଧ୍ୟ ରାଷ୍ଟ୍ରୀୟ ପୁରସ୍କାର ପାଇଁ ମନୋନୀତ ।

୧୮ । ୪-- ଆଡ୍‌ମିରାଲ୍ ରବୀନ୍ କୁମାର ଧାଓ୍ୱନଙ୍କର ଭାରତର ୨୨ତମ ନୌସେନା ମୁଖ୍ୟ ଭାବେ ଦାୟିତ୍ୱ ଗ୍ରହଣ ।

## ବିଦେଶ ଖବର

୧୪ । ୪-- ଗୁଇନ୍ଦା ବିଭାଗର ତଥ୍ୟ ଅନୁଯାୟୀ ମାଲେସିୟାର ନିଖୋଜ ବିମାନ ଆତଙ୍କବାଦୀଙ୍କ ଦ୍ୱାରା ଅପହୃତ । ସମୁଦ୍ରତଳେ ତଲାସ୍ ପାଇଁ ରୋବୋଟିକ୍ ଡ୍ରୋନ୍ ମୁତୟନ ।

୧୫ । ୪-- ଭାରତ ଜନ୍ମିତ କବି ବିଜୟ ଶେଷାଦ୍ରିଙ୍କୁ ୨୦୧୪ ବର୍ଷ ପାଇଁ ସମ୍ମାନଜନକ 'ପୁଲିତ୍‌ଜର' ପୁରସ୍କାର ପ୍ରଦାନ । ତାଙ୍କର କବିତା ସଙ୍କଳନ '୩ ସେକ୍ସନ୍' ପାଇଁ ସେ ଏହି ପୁରସ୍କାର ପାଇବେ ।

୧୮ । ୪-- ଦକ୍ଷିଣ କୋରିଆରେ ୪୭୫ଜଣ ଯାତ୍ରୀଙ୍କୁ ନେଇ ଯାଉଥିବା ଏକ ଜାହାଜ ବୁଡ଼ି ଯିବାରୁ ୨୬୮ଜଣ ନିଖୋଜ । ଦାମିଓନ୍ ହାଇସ୍କୁଲର ୩୨୫ଜଣ ଛାତ୍ରଛାତ୍ରୀ ଓ ୧୪ଜଣ ଶିକ୍ଷକ ଥିଲେ । ଏହି ସ୍କୁଲର ଉପାଧ୍ୟକ୍ଷଙ୍କ ଆତ୍ମହତ୍ୟା ।

EDITED, PRINTED & PUBLISHED BY ANASUYA NANDA AT SANSAR PRESS, TALATELENGA BAZAR, CUTTACK-753009, Ph : 2420075, 2422597